# କଥା-ଶତକ ।

( ଈସପ୍ ଗଳ୍ପ )

ଶ୍ରୀ ବାଙ୍କନାଥ ପଟ୍ଟନାୟକ ବି. ଏଲ୍, ।

ଦ୍ୱିତୀୟ ମୁଦ୍ରଣ ।

**Printed by V. Kar**
THE UTKAL SAHITYA PRESS,
**CUTTACK.**
**1925**

ମୂଲ୍ୟ ୬୦ ପ

# ନିବେଦନ ।



କଥା, କାହାଣୀ, ଗଳ୍ପ ପ୍ରଭୃତି କଳ୍ପନାତ୍ମକ ରଚନା ସାହିତ୍ୟର ଗୋଟିଏ ପ୍ରଧାନ ଅଙ୍ଗ । ଏହିସବୁଦ୍ୱାରା କଳ୍ପନାଶକ୍ତି ବିକଶିତ ହେବା ସଙ୍ଗେ ସଙ୍ଗେ ଅନେକ ନୀତିଶିକ୍ଷା ମଧ୍ୟ ମିଳେ । ଆମ୍ଭମାନଙ୍କ ଦେଶର "ହିତୋପଦେଶ" ଓ ଈଶପ୍‌ଙ୍କର ଗଳ୍ପଗୁଡ଼ିକ ପ୍ରଧାନତଃ ନୀତିଗର୍ଭତ୍ମକ । ଏଥିରେ ଜୀବଜନ୍ତୁମାନଙ୍କର ଭାବଭଙ୍ଗୀ ଓ ଆଚାର ବ୍ୟବହାର ଗଳ୍ପଚ୍ଛଳରେ ଏପରି ନିପୁଣ-ଭାବରେ ବର୍ଣ୍ଣିତ ହୋଇଅଛି ଯେ ତାହା ପାଠ କଲେ ନୀତିଶିକ୍ଷା ଛଡ଼ା ଅନେକ ଗଭୀର ସାମାଜିକ ଓ ରାଜନୈତିକ ତତ୍ତ୍ୱର ମଧ୍ୟ ପରିଚୟ ମିଳେ । ମନୁଷ୍ୟର ଶୀଳ ନୀତି ଓ ସ୍ୱଭାବ ଚରିତ୍ରର ଉନ୍ନତି କରିବା ଗଳ୍ପଗୁଡ଼ିକର ମୁଖ୍ୟ ଉଦ୍ଦେଶ୍ୟ ହେଲେହେଁ ଜୀବଜନ୍ତୁ ଓ ପଶୁପକ୍ଷୀମାନଙ୍କ ମୁଖରେ ମନୁଷ୍ୟର ଭାଷା ଆରୋପ କରି ଏହି ଉଦ୍ଦେଶ୍ୟ ପ୍ରଚ୍ଛନ୍ନ ରଖା ହୋଇଅଛି । ଉପଦେଶ ଯେତେ ମୂଲ୍ୟବାନ ହେଲେ ସୁଦ୍ଧା ଅନ୍ୟ ଜଣେ ଉପଦେଷ୍ଟାର ଆସନରେ ବସି ତାହା ପାଳନ କରିବାକୁ ଆଦେଶ ବା ପରାମର୍ଶ ଦେଲେ ତାହାର ମୂଲ୍ୟ ଅନେକ ପରିମାଣରେ କମିଯାଏ—ସାଧାରଣତଃ ମନୁଷ୍ୟର ତାହା ସେତେ ମୁଖରୋଚକ ହୁଏ ନାହିଁ । କିନ୍ତୁ ଏ ଗଳ୍ପଗୁଡ଼ିକରେ ଉପଦେଷ୍ଟା ଅନ୍ତରାଳରେ ଥିବାରୁ ପାଠକଙ୍କ ମନ ସ୍ୱତଃ ସୁନ୍ଦର ଓ ପବିତ୍ର ଜିନିଷ ପ୍ରତି ଆକୃଷ୍ଟ ହୋଇ ପଡ଼େ ଏବଂ ଅନୀତି, ଦୁଶ୍ଚରିତ୍ର ଓ ନୀଚତା ପ୍ରତି ଗୋଟାଏ ବିଦ୍ୱେଷଭାବ ଜାଗ୍ରତ ହୁଏ । ଅନେକ ଗଳ୍ପରେ ନୀତିଟି ଏପରି ପରିସ୍ଫୁଟ ଓ ଗଳ୍ପ ସହିତ ଓତପ୍ରୋତଭାବରେ ଜଡ଼ିତ ଯେ ଗୋଟିଏ କ୍ଷୁଦ୍ର ଶିଶୁର ସୁଦ୍ଧା ତାହା ସହଜରେ ହୃଦୟଙ୍ଗମ ହୋଇ ପାରିବ—ସ୍ୱତନ୍ତ୍ର ବାକ୍ୟଦ୍ୱାରା ତାହାକୁ ବୁଝାଇ ଦେବା ଆବଶ୍ୟକ ନାହିଁ ।

ଇସପ ଖ୍ରୀଷ୍ଟପୂର୍ବ ୬୨୦ ସାଲରେ ଗ୍ରୀସ ଦେଶର ଗୋଟିଏ କ୍ରୀତଦାସ ପରିବାରରେ ଜନ୍ମଗ୍ରହଣ କରିଥିଲେ ପରେ ପରେ ଦୁଇଟି ମୁନିବଙ୍କ ନିକଟରେ ତାଙ୍କୁ ଦାସତ୍ୱ କରିବାକୁ ହୋଇଥିଲା । କିନ୍ତୁ ଶେଷ ମୁନିବ ତାଙ୍କର ଜ୍ଞାନ, ବୁଦ୍ଧି ଓ ବାକ୍‌ପଟୁତାରେ ସନ୍ତୁଷ୍ଟ ହୋଇ ପୁରସ୍କାରସ୍ୱରୂପ ତାଙ୍କୁ ମୁକ୍ତି ପ୍ରଦାନ କରିଥିଲେ । ଦାସତ୍ୱରୁ ମୁକ୍ତି ପାଇଲା ପରେ କ୍ରୀତଦାସମାନେ କୌଣସି ରାଜନୈତିକ ଅଧିକାରରୁ ବଞ୍ଚିତ ହେଉ ନ ଥିଲେ । ଇସପ୍ ସାମାନ୍ୟ କ୍ରୀତଦାସ ଅବସ୍ଥାରୁ ନିଜର ପ୍ରତିଭାବଳରେ କ୍ରମେ ଉଚ୍ଚରୁ ଉଚ୍ଚତର ପଦରେ ଆରୂଢ଼ ହେଲେ ଏବଂ ତାଙ୍କର ସୁଖ୍ୟାତି ଚାରିଆଡ଼େ ବ୍ୟାପ୍ତ ହୋଇ ପଡ଼ିଲା । ରାଜଦୂତ ଓ ରାଜପ୍ରତିନିଧିରୂପେ ତାଙ୍କୁ ଗ୍ରୀସର ନାନା ପ୍ରଦେଶରେ ଭ୍ରମଣ କରିବାକୁ ହୋଇଥିଲା । ତାଙ୍କର ବାକ୍‌ପଟୁତା ଯୋଗୁଁ ସେ ସମସ୍ତଙ୍କର ଶ୍ରଦ୍ଧାଭାଜନ ହୋଇଥିଲେ । ତାଙ୍କର ଏହି ସରଳ ନୀତିଗର୍ଭ ଗଳ୍ପଗୁଡ଼ିକର ବିବୃତିଦ୍ୱାରା ସେ ଅନେକ ଜଟିଳ ସମସ୍ୟାର ମୀମାଂସା କରି ରାଜା ପ୍ରଜାଙ୍କ ମଧ୍ୟରେ ସମନ୍ୱୟ ସ୍ଥାପନ କରି ପାରିଥିଲେ ।

ପ୍ରାୟ ଦୁଇ ସହସ୍ରାଧିକ ବର୍ଷ ହେଲା ଏହି ଗଳ୍ପଗୁଡ଼ିକ ସାହିତ୍ୟଜଗତରେ ଗୋଟିଏ ବିଶିଷ୍ଟ ସ୍ଥାନ ଅଧିକାର କରି ଆସିଅଛି । ପୃଥିବୀର ପ୍ରାୟ ସମସ୍ତ ସଭ୍ୟ ଭାଷାରେ ଗଳ୍ପଗୁଡ଼ିକ ଅନୁବାଦିତ ହୋଇଅଛି ଏବଂ ଏକ ଏକ ଭାଷାରେ ଏହାର ବିଭିନ୍ନ ସଂସ୍କରଣ ମଧ୍ୟ ଦେଖା ଯାଉଅଛି । ଗଳ୍ପଗୁଡ଼ିକର ଆଦର ଦେଶକାଳନିର୍ବିଶେଷରେ ଏପର୍ଯ୍ୟନ୍ତ ସୁଦ୍ଧା ସେହିପରି ଅକ୍ଷୁର୍ଣ୍ଣ ରହିଅଛି ।

ନିମ୍ନ ଶ୍ରେଣୀର କେତେକ ପାଠ୍ୟପୁସ୍ତକରେ ଏଥିରୁ କେତେଗୋଟି ଗଳ୍ପ ସନ୍ନିବେଶିତ ହୋଇଥିଲେ ସୁଦ୍ଧା ଇସପ୍‌ଙ୍କ ଗଳ୍ପଗୁଡ଼ିକ ଏପର୍ଯ୍ୟନ୍ତ ଓଡ଼ିଆ ଭାଷାରେ ସ୍ୱତନ୍ତ୍ରଭାବରେ ସଂକଳିତ ହୋଇ ନାହିଁ । ପୁଣି ଉକ୍ତ ଗଳ୍ପମାନଙ୍କ ମଧ୍ୟରୁ କାହାରି କାହାରି ଭାଷା କଠିନଶବ୍ଦପ୍ରୟୋଗଦ୍ୱାରା ଏପରି ଭାରାକ୍ରାନ୍ତ

ଷ୍ଟ ଗଳ୍ପର ସୌନ୍ଦର୍ଯ୍ୟହାନି ଘଟିଥିଲା ପରି ବୋଧ ହୁଏ । ଏହି ଅଭାବ ଦୂରୀକରଣ ନିମନ୍ତେ ମୁଁ ଏହି ଗଳ୍ପଗୁଡ଼ିକ ପ୍ରକାଶ କରିବାକୁ ପ୍ରୟାସୀ ହୋଇଅଛି । ଭାଷା ଯଥାସମ୍ଭବ ସରଳ, ସହଜ ଓ ଶିଶୁଜନସୁଲଭ କରି ହୋଇଅଛି ଏବଂ ମୂଳଗଳ୍ପଗୁଡ଼ିକର ସୌନ୍ଦର୍ଯ୍ୟ ଅବିକୃତ ରଖିବା ନିମନ୍ତେ ଯତ୍ନର କୌଣସି ତ୍ରୁଟି ହୋଇ ନାହିଁ । ଗଳ୍ପଗୁଡ଼ିକ ନିଜ ଗୁଣରେ ଏପରି ଗରୀୟାନ ଯେ ଏଥିପ୍ରତି ସର୍ବସାଧାରଣଙ୍କର ଯେ ସହାନୁଭୂତି ହେବ ଏପରି ଆଶା କରିବା ଅମୂଳକ ନୁହେ । ଏ ପୁସ୍ତକରେ ବାଛି ବାଛି କେବଳ ଅତ୍ୟୁତ୍କୃଷ୍ଟ ଶହେ ଗୋଟି ଗଳ୍ପ ଦିଆଗଲା । ଏଥିପାଇଁ ଏହାର ନାମ **“କଥା-ଶତକ”** ରଖା ହୋଇଅଛି । ଏଥିପ୍ରତି ପାଠକମାନଙ୍କର ଆଗ୍ରହ ଦେଖି ପାରିଲେ ଭବିଷ୍ୟତ୍‌ରେ ଆଉ କେତୋଟି ଗଳ୍ପ ପ୍ରକାଶ କରିବାର ବାସନା ରହିଲା । ଇତି ।

ବାଙ୍କନାଥ ପଟ୍ଟନାୟକ ।

# ସୂଚୀପତ୍ର ।




| ବିଷୟ | | ପୃଷ୍ଠା । |
|---|---|---|
| ୧ । ବାଳକା ଓ ତାହାର ଦୁଧପସରା | ... | ୧ |
| ୨ । ଛେଳିଜଗୁଆଳ ଓ ବଣଛେଳି | ... | ୨ |
| ୩ । ବିଲୁଆ ଓ ଅଙ୍ଗୁରଫଳ | ... | ୩ |
| ୪ । ଦୁଷ୍ଟ କୁକ୍କୁର | ... | ୪ |
| ୫ । ଗଧ ଓ ଖଚର | ... | ୫ |
| ୬ । ବାଳକ ଓ ବାଦାମ ମାଠିଆ | ... | ୬ |
| ୭ । ଛଦ୍ମବେଶୀ ଗଧିଆ | ... | ୭ |
| ୮ । ମୂଷିକସଭା | ... | ୭ |
| ୯ । ମାଙ୍କଡ଼ ଓ କେଉଟ | ... | ୮ |
| ୧୦ । ସିଂହ ଓ ମୂଷା | ... | ୯ |
| ୧୧ । ବାଡ଼ିଗୋଛା | ... | ୧୦ |
| ୧୨ । ଗଧ ଓ ଝିଣ୍ଟିକା | ... | ୧୧ |
| ୧୩ । ଭାଲୁ ଓ ଦୁଇ ପଥିକ | ... | ୧୧ |
| ୧୪ । ପୀଡ଼ିତସିଂହ | ... | ୧୨ |
| ୧୫ । ବାଳକ ଓ ଗଧିଆ | ... | ୧୩ |
| ୧୬ । କୋକିଶିଆଳ ଓ ଛେଳି | ... | ୧୪ |
| ୧୭ । ଗଧିଆ ଓ ବଗ | ... | ୧୫ |
| ୧୮ । ସିଂହ ଓ କାଠୁରିଆ | ... | ୧୬ |
| ୧୯ । ପିମ୍ପୁଡ଼ି ଓ ଝିଣ୍ଟିକା | ... | ୧୭ |
| ୨୦ । ଗଧ ଓ କୁକ୍କୁର | ... | ୧୭ |

| ବିଷୟ | | ପୃଷ୍ଠା । |
|---|---|---|
| ୨୧ । କୁଣ୍ଡଭିତରେଥିବା କୁକୁର | ... | ୧୮ |
| ୨୨ । ଲାଞ୍ଜକଟାବିଲୁଆ | ... | ୧୯ |
| ୨୩ । କେଉଟ ଓ ଛୋଟମାଛ | ... | ୨୦ |
| ୨୪ । କୃପଣଲୋକ | ... | ୨୧ |
| ୨୫ । ଜ୍ୟୋତିଷ | ... | ୨୧ |
| ୨୬ । ବଣଗଧ ଓ ସିଂହ | ... | ୨୨ |
| ୨୭ । ବିଲୁଆ ଓ କାଉ | ... | ୨୨ |
| ୨୮ । ପୀଡ଼ିତ ହରିଣ | ... | ୨୩ |
| ୨୯ । ବିଲୁଆ ଓ ମେଣ୍ଢା | ... | ୨୪ |
| ୩୦ । ଗଧ ଓ ବାଘ | ... | ୨୫ |
| ୩୧ । ଚିମ୍ପୁଡ଼ି ଓ କାପ୍ତା | ... | ୨୬ |
| ୩୨ । ଚକ୍ରୀ ତାର ପୁଅ ଓ ଗଧ | ... | ୨୬ |
| ୩୩ । ବାଳକ ଓ ବାଟୋଇ | ... | ୨୮ |
| ୩୪ । ଗଧିଆ ଓ ମେଣ୍ଢାଜଗୁଆଳ | ... | ୨୯ |
| ୩୫ । ଜ୍ୟୋତିଷ | ... | ୨୯ |
| ୩୬ । ବିଲୁଆ ଓ ମାଙ୍କଡ଼ | ... | ୩୦ |
| ୩୭ । କୁକୁର ଓ ତାର ଛାଇ | ... | ୩୧ |
| ୩୮ । ପଶୁ, ପକ୍ଷୀ ଓ ବାଦୁଡ଼ି | ... | ୩୨ |
| ୩୯ । ଗଧ ଓ ତାର ଖରିଦଦାର | ... | ୩୨ |
| ୪୦ । ମାଛି ଓ ଗଧିଆ | ... | ୩୩ |
| ୪୧ । ଗଧ ଓ ଘୋଡ଼ା | ... | ୩୪ |
| ୪୨ । କାଉ ଓ ମେଣ୍ଢା | ... | ୩୪ |
| ୪୩ । ଲୁଣସଦାଗର ଓ ଗଧ | ... | ୩୫ |

| ବିଷୟ | | ପୃଷ୍ଠା । |
|---|---|---|
| ୪୫ । ଜଣେ ଲୋକ ଓ ତାର ଦୁଇ ସ୍ତ୍ରୀ | ... | ୩୬ |
| ୪୬ । ସିଂହ ଓ ବଗ୍ଧ | ... | ୩୬ |
| ୪୭ । ମୂଷା ଓ ନେଉଳ | ... | ୩୭ |
| ୪୮ । ଗଧ, କୁକୁଡ଼ା ଓ ସିଂହ | ... | ୩୮ |
| ୪୯ । ଗଧିଆ ଓ ସିଂହ | ... | ୩୯ |
| ୫୦ । ଗଧିଆ ଓ ମେଣ୍ଢାଛୁଆ | ... | ୪୦ |
| ୫୧ । ଭାଲ୍ଲୁ ଓ ବିଲୁଆ | ... | ୪୧ |
| ୫୨ । ବୁଢ଼ୀ ଓ ଡାକ୍ତର | ... | ୪୧ |
| ୫୩ । କୁକୁର, କୁକୁଡ଼ା ଓ ବିଲୁଆ | ... | ୪୨ |
| ୫୪ । ବାଘ ଓ ପୋଷାକୁକୁର | ... | ୪୩ |
| ୫୫ । ମେଣ୍ଢାଜଗୁଆଳ ଓ ଗଧିଆ | ... | ୪୪ |
| ୫୬ । କାଠୁରିଆ ଓ ଯମ | ... | ୪୫ |
| ୫୭ । ବେଙ୍ଗମାନଙ୍କର ରଜା ଲାଗି ପ୍ରାର୍ଥନା | ... | ୪୬ |
| ୫୭ । ଶିକାରୀ ଓ କେଉଟ | ... | ୪୯ |
| ୫୮ । ଠେକୁଆ ଓ କଇଁଛ | ... | ୪୯ |
| ୫୯ । ମନୁଷ୍ୟ ଓ ସିଂହ | ... | ୫୦ |
| ୬୦ । ଗଧ ଓ ତାର ଛାଇ | ... | ୫୧ |
| ୬୧ । କଇଁଛ ଓ ଇଗଲପକ୍ଷୀ | ... | ୫୨ |
| ୬୨ । କାଉ ଓ ମୟୂରପୁଚ୍ଛ | ... | ୫୩ |
| ୬୩ । ଧୋବା ଓ କୋଇଲାବ୍ୟବସାୟୀ | ... | ୫୪ |
| ୬୪ । ବିଲୁଆ ଓ କାଠୁରିଆ | ... | ୫୪ |
| ୬୫ । ପେଟ ଓ ଅନ୍ୟାନ୍ୟ ଅଙ୍ଗପ୍ରତ୍ୟଙ୍ଗ | ... | ୫୫ |
| ୬୬ । ବୁଢ଼ାସିଂହ | ... | ୫୬ |

| ବିଷୟ | | ପୃଷ୍ଠା । |
|---|---|---|
| ୬୭ । ଷଣ୍ଢ ଓ ମଶା | ... | ୫୭ |
| ୬୮ । ଦାର୍ଶନିକ, ପିମ୍ପୁଡ଼ି ଓ ଦେବଦୂତ | ... | ୫୮ |
| ୬୯ । ଠେକୁଆ ଓ ବେଙ୍ଗ | ... | ୫୯ |
| ୭୦ । ଗଧ ଓ ମନୁଷ୍ୟ | ... | ୬୦ |
| ୭୧ । ପକ୍ଷୀ ଓ ଷବର | ... | ୬୧ |
| ୭୨ । କୁରାଢ଼ି ଓ ଜଳଦେବତା | ... | ୬୧ |
| ୭୩ । ସିଂହ ଓ ମେଣ୍ଢାଜଗୁଆଳ | ... | ୬୩ |
| ୭୪ । ଘୋଡ଼ା ଓ ହରିଣ | ... | ୬୪ |
| ୭୫ । ସିଂହ ଓ ଠେକୁଆ | ... | ୬୪ |
| ୭୬ । ଛେଳିଛୁଆ ଓ ଗଧିଆ | ... | ୬୫ |
| ୭୭ । ଦୁଇଜଣ ବାଟୋଇ ଓ କୁରାଢ଼ି | ... | ୬୬ |
| ୭୮ । ଭାଇ ଓ ଭଉଣୀ | ... | ୬୬ |
| ୭୯ । ସିଂହ, ଗଧିଆ ଓ କୋକିଶିଆଳ | ... | ୬୭ |
| ୮୦ । ଷଣ୍ଢ ଓ ଗାଉଁଲିଲୋକ | ... | ୬୮ |
| ୮୧ । ଈଗଲପକ୍ଷୀ ଓ କାଉ | ... | ୭୦ |
| ୮୨ । କୁକ୍କୁର ଓ ଚମଡ଼ା | ... | ୭୧ |
| ୮୩ । ଘୋଡ଼ା ଓ ସଇସ | ... | ୭୨ |
| ୮୪ । ଚୋର ଓ ତାର ମା | ... | ୭୨ |
| ୮୫ । ଗୋରୁ ଓ କଂସେଇ | ... | ୭୩ |
| ୮୬ । ହରିଣ, ଗଧିଆ ଓ ମେଣ୍ଢା | ... | ୭୪ |
| ୮୭ । ସିଂହ, ବ୍ରହ୍ମା ଓ ହାତୀ | ... | ୭୪ |
| ୮୮ । ସ୍ତ୍ରୀଲୋକ ଓ ତାର କୁକୁଡ଼ା | ... | ୭୫ |
| ୮୯ । ଭରଦ୍ୱଆପକ୍ଷୀ ଓ ତାହାର ଛୁଆ | ... | ୭୬ |

| ବିଷୟ | | ପୃଷ୍ଠା । |
|---|---|---|
| ୯୦ । ଛେଳଛୁଆ ଓ ଗଧିଆ | ... | ୭୭ |
| ୯୧ । ଶିକାରୀ ଓ ଅଶ୍ୱାରୋହୀ | ... | ୭୭ |
| ୯୨ । ଘୋଡ଼ା ଓ ତାର ଆରୋହୀ | ... | ୭୮ |
| ୯୩ । ଡାହାଲକୁକୁର ଓ ଠେକୁଆ | ... | ୭୮ |
| ୯୪ । ବେଙ୍ଗ ଓ ବୈଦ୍ୟ | ... | ୭୯ |
| ୯୫ । ବିରାଡି ଓ ବୃଦ୍ଧା | ... | ୮୦ |
| ୯୬ । କଳହୁଡ଼ି ସ୍ତ୍ରୀ | .. | ୮୦ |
| ୯୭ । ମହୁମାଛି ଓ ବୃଦ୍ଧା | ... | ୮୧ |
| ୯୮ । ବିଧବା ଓ ତାର ଦୁଇ ବାଳିକା ଦାସୀ | ... | ୮୨ |
| ୯୯ । ଠେକୁଆ ଓ ତାର ସଙ୍ଗୀମାନେ | ... | ୮୩ |
| ୧୦୦ । ମୋଟ ଡାକ୍ତର | ... | ୮୪ |





# କଥା-ଶତକ ।

## ( ପ୍ରଥମ ଗଳ୍ପ )

( ୧ )

### ବାଳିକା ଓ ତାହାର ଦୁଧପସରା ।



ଦିନେ ଗୋଟିଏ ବାଳିକା ଦୁଧପସରାଟିଏ ମୁଣ୍ଡାଇ ବାଟରେ ଯାଉଁ ଯାଉଁ ଭାବିଲା, "ଏ ଦୁଧତକ ବିକିଲେ ଯେଉଁ ପଇସା ହେବ, ସେଥିରେ କେତେ-ଗୁଡ଼ିଏ କୁକୁଡ଼ାଡିମ୍ବ କିଣିବି । ଡିମ୍ବତକ ଫୁଟିଲେ ଅନେକ ଛୁଆ ହେବ । ସେ ଛୁଆଗୁଡ଼ିକ ପୁଣି ବଢ଼ି ବଡ଼ କୁକୁଡ଼ା ହେଲେ ତାଙ୍କୁ ବିକି ଅନେକ ପଇସା ପାଇବି । ସେ ପଇସାରେ ଗୋଟିଏ ଭଲ ପୋଷାକ କିଣି ତାକୁ ପିନ୍ଧି ଯାତ୍ରା ଦେଖିବାକୁ ଯିବି । କେହି କିଛି ପଚାରିଲେ ଗର୍ବରେ ମୁଣ୍ଡ ହଲାଇ ସେଠାରୁ ଚାଲିଯିବି ।" ଏହିପରି ସୁଖସ୍ୱପ୍ନ ଦେଖୁ ଦେଖୁ ସେହି ଅନୁସାରେ ସେ ମୁଣ୍ଡକୁ ଏପରି ଭାବରେ ହଲାଇ ଦେଲା ଯେ, ମୁଣ୍ଡରୁ ଦୁଧପସରାଟି ଖସି ପଡ଼ିଲା ଓ ସଙ୍ଗେ ସଙ୍ଗେ ତାର ସବୁ କଳ୍ପନାଗୁଡ଼ିକ ଚୂନା ହୋଇଗଲା ।



( ୨ )

## ଛେଳିଜଗୁଆଳ ଓ ବଣଛେଳି ।



ଦିନେ ଗୋଟିଏ ଛେଳିଜଗୁଆଳ ସନ୍ଧ୍ୟାବେଳେ ଚରାଭୂଇଁରୁ ଛେଳି-ପଲଙ୍କୁ ଅଡ଼ାଇ ଆଣୁ ଆଣୁ ପଲ ଭିତରେ କେତେଗୁଡ଼ାଏ ବଣଛେଳି ଆସି ମିଶିଗଲେ । ଜଗୁଆଳ ବଡ଼ ଖୁସି ହୋଇ ସେମାନଙ୍କୁ ନେଇ ନିଜ ଛେଳି-ମାନଙ୍କ ସଙ୍ଗେ ଏକା ଗୁହାଳରେ ରଖିଲା । ତହିଁ ଆରଦିନ ବେଶି ବରଫ ପଡ଼ିବାରୁ ଜଗୁଆଳ ଛେଳିମାନଙ୍କୁ ଚରାଇବାକୁ ନ ନେଇ ଗୁହାଳରେ ବନ୍ଦ କରି ରଖିଲା । ସେ ଦିନ ସେ ନିଜ ଛେଳିମାନଙ୍କୁ ସାମାନ୍ୟ କିଛି କିଛି ଖାଇବାକୁ ଦେଇ ବଣଛେଳିମାନେ କେଜାଣି ଲୋଭରେ ପଡ଼ି ରହିଯିବେ, ଏହି ଆଶାରେ ସେମାନଙ୍କୁ ଖୁବ୍ ଭଲ କରି ଖାଇବାକୁ ଦେଲା । ବରଫ ଛାଡ଼ି ଯିବାରୁ ସେ ସମସ୍ତଙ୍କୁ ଏକସଙ୍ଗରେ ନେଇ ଚରାଇବାକୁ ଗଲା । କିନ୍ତୁ ବଣ-ଛେଳିଗୁଡ଼ିକ ଆଉ ପଲରେ ନ ରହି ପାହାଡ଼ ଉପରକୁ ପଳାଇ ଗଲେ । ଜଗୁଆଳ ସେମାନଙ୍କୁ ଗାଳି ଦେଇ କହିଲା, "ମୁଁ ଝଡ଼ ବରଷା ସମୟରେ ମୋ ନିଜ ଛେଳିମାନଙ୍କୁ ନ ପଚାରି ତୁମମାନଙ୍କର ଏତେ ଯତ୍ନ ନେଲି, ଅଥଚ ଏତେବେଳକୁ ତୁମେମାନେ ମୋତେ ଦଗା ଦେଇ ପଳାଉଛ ?" ସେମାନଙ୍କ ମଧ୍ୟରୁ ଗୋଟିଏ ବଣଛେଳି ପଛକୁ ଫେରି କହିଲା, "ତୁମେ ଆମର ଏତେ ଯତ୍ନ କଲ ବୋଲି ତ ଆମେମାନେ ପୂର୍ବରୁ ସତର୍କ ହୋଇ ପଳାଉଛୁଁ । ତୁମେ କାଲି ଯେ ନିଜ ଛେଳିମାନଙ୍କଠାରୁ ଆମମାନଙ୍କୁ ବେଶି ଖାଇବାକୁ ଦେଲ, ଏଥିରୁ ବୁଝାଯାଉଛି ଯେ, ପୁଣି ଯେତେବେଳେ ଆଉ ଗୁଡ଼ାଏ ନୂଆ ଛେଳି ଆସିବେ, ତୁମେ ଆମମାନଙ୍କୁ ନ ପଚାରି ସେମାନଙ୍କୁ ବେଶି ଆଦର କରିବ ।"

ନୂଆ ବନ୍ଧୁ ପାଇ ପୁରୁଣା ବନ୍ଧୁଙ୍କୁ ଅନାଦର କରିବା ଉଚିତ ନୁହେଁ ।





( ୭ )

## ବିଲୁଆ ଓ ଅଙ୍ଗୁର ଫଳ ।

ଦିନେ ଗୋଟିଏ ବିଲୁଆ ଭୋକରେ ବିକଳ ହୋଇ ବୁଲୁ ବୁଲୁ ଦେଖି ପାରିଲା ଯେ, ଗୋଟିଏ ଅଙ୍ଗୁର ଗଛରେ ପେନ୍ଥା ପେନ୍ଥା ହୋଇ ଅନେକ ଅଙ୍ଗୁର ପାଚିଛି । ସେ ଅଙ୍ଗୁର ପାଇବା ଲାଗି ଅନେକ ଚେଷ୍ଟା କଲା, କିନ୍ତୁ କିଛି ଫଳ ହେଲା ନାହିଁ— ଖାଲି ପରିଶ୍ରମ ସାର ହେଲା । ସେ ଯେତେ ଡେଇଁଲେ ସୁଦ୍ଧା ଅଙ୍ଗୁର ନିକଟକୁ ତାର ମୁହଁ ପାଇଲା ନାହିଁ । ଶେଷରେ ହତାଶ ହୋଇ ମନକୁ ବୋଧ ଦେବା ଲାଗି ବିଲୁଆ କହିଲା; "ଅଙ୍ଗୁରଗୁଡ଼ାକ ଖଟା ହୋଇଛି । ମୁଁ ଯାହା ମନେ କରିଥିଲି ପାଚିଛି ବୋଲି, ତାହା ନୁହେ । ଆଉ ତାକୁ ଖାଇ ଫଳ କଅଣ ?"

( ୪ )

## ଦୁଷ୍ଟ କୁକୁର ।



ଜଣେ ଲୋକର ଗୋଟିଏ ବଡ଼ ଦୁଷ୍ଟ କୁକୁର ଥିଲା । ସେ ଯାହାକୁ ଦେଖେ ଚୁପ କରି ପଛେ ପଛେ ଯାଇ ତାକୁ କାମୁଡ଼ି ଦିଏ । ତାହାର ଏପରି ପ୍ରକୃତି ଦେଖି କୁକୁରର ଖାଉନ୍ଦ ତା ବେକରେ ଗୋଟିଏ ଘଣ୍ଟି ବାନ୍ଧି ଦେଲା, କାରଣ ତାହାହେଲେ ସେ ଯେଉଁ ବାଟରେ ଯିବ, ଲୋକେ ଜାଣି ପାରି ସତର୍କ ହୋଇ ରହିବେ । କିନ୍ତୁ କୁକୁର ଏତେ କଥା ବୁଝି ନ ପାରି ମନେ କଲା, ଏଇଟା ମୋର ବାହାଦୁରୀର ଚିହ୍ନ । ଏହା ଭାବି ସେ ଗର୍ବରେ ଘଣ୍ଟି ବଜାଇ ବଜାରଯାକ ବୁଲିବାକୁ ଲାଗିଲା ।

ଦିନେ ଗୋଟିଏ ବୁଢ଼ା କୁକୁର ତାକୁ ଦେଖି କହିଲା, "ତୁ ମିଛରେ କାହିଁକି ଏତେ ଦେଖାଇ ହୋଇ ବୁଲୁଛୁ ? ତୋ ବେକରେ ଯେଉଁ ଘଣ୍ଟି ବନ୍ଧା ହୋଇଅଛି, ସେଇଟା ତୋ ଗୁଣ ଲାଗି ଦିଆ ହୋଇ ନାହିଁ—ସେଇଟା ତୋର କଳଙ୍କର ଚିହ୍ନ । ଏଥିରୁ ସମସ୍ତେ ଜାଣି ପାରିବେ ଯେ, ଏଇଟା ଗୋଟାଏ ଦୁଷ୍ଟ କୁକୁର ଏବଂ ଦେଖିଲା ମାତ୍ରେ ଦୂର ଦୂର କରିବେ ।"

ସମୟ ସମୟରେ ଲୋକେ ଅଖ୍ୟାତିକୁ ଖ୍ୟାତି ବୋଲି ମନେ କରି ଉଲଟି ଗର୍ବ କରନ୍ତି ।



( ୫ )

# ଗଧ ଓ ଖଚର ।



ଜଣେ ଲୋକ ଗୋଟିଏ ଗଧ ଗୋଟିଏ ଖଚର ଉପରେ ଜିନିଷ ପତ୍ର ଲଦି ଏକସ୍ଥାନକୁ ଯିବାକୁ ବାହାରିଲା । ସମାନ ଭୂଇଁରେ ବୋଝ ନେଇ ଚାଲିବାବେଳେ ଗଧକୁ କିଛି ବାଧି ନ ଥିଲା । କିନ୍ତୁ ଯେତେବେଳେ ପାହାଡ଼ିଆ ବାଟ ପଡ଼ିଲା, ସେ ଆଉ ପାରିଲା ନାହିଁ । ବହୁ କଷ୍ଟରେ ଗୋଟିଏ ଗୋଟିଏ ଚାଲି ଶେଷରେ ସେ ଖଚରକୁ କହିଲା, "ଭାଇ ! ମତେ ଭାରି କଷ୍ଟ ହେଲାଣି, ତୁ ଯେବେ ଦୟା କରି ଖଣ୍ଡେ ବାଟ ମୋ ବୋଝରୁ ଗୁଡ଼ାଏ ଧରନ୍ତୁ, ତେବେ ମତେ ଆଉ ଏତେ ବାଧନ୍ତା ନାହିଁ ।" ଯେତେ କହିଲେ ସୁଦ୍ଧା ଖଚର ଗଧ କଥା ଜମା ଶୁଣିଲା ନାହିଁ ।

କିଛି ସମୟ ପରେ ଗଧଟି ବାଟରେ ପଡ଼ି ମରିଗଲା । ଲୋକଟି ଏପରି ଜଙ୍ଗଲ ବାଟରେ ଆଉ କିଛି ଉପାୟ ନ ଦେଖି ଖଚର ଉପରେ ଗଧର ବୋଝତକ ଲଦି ଦେଲା । ଶେଷରେ ଗଧର ଚମଡ଼ା ଖଣ୍ଡି ମଧ୍ୟ ଛଡ଼ାଇ ତାହାର ଉପରେ ବୋଝାଇ କଲା । ଏତେ ଭାରି ବୋଝରେ ଚାଁ ଚାଁ ହୋଇ ଖଚର ଭାବିଲା, 'ମୋ ପ୍ରତି ଠିକ୍ ବ୍ୟବହାର ହୋଇଅଛି । ମୁଁ ଯଦି ଗଧର ଆପଦ ବେଳେ ତାକୁ ଟିକିଏ ସାହାଯ୍ୟ କରିଥାନ୍ତି, ତାହାହେଲେ ମୋର କେବେହେଁ ଏ ଦଶା ହୋଇ ନଥାନ୍ତା ।"



( ୬ )

## ବାଳକ ଓ ବାଦାମ ମାଠିଆ ।



ଗୋଟିଏ ମାଠିଆରେ ଗୁଡ଼ିଏ ବାଦାମ ପୂର୍ଣ୍ଣ ହୋଇଥିଲା । ଗୋଟିଏ ବାଳକ ମାଠିଆ ଭିତରେ ହାତ ପୂରାଇ ଲୋଭ କରି ମୁଠାରେ ଯେତେ ବାଦାମ ଧରିବ ତେତେ ଧରି ହାତ କାଢ଼ି ଆଣିଲା ବେଳକୁ ମାଠିଆ ବେକରେ ଲାଗି ହାତ ଅଟକି ରହିଲା । ବାଦାମର ଲୋଭ ଛାଡ଼ି ପାରୁ ନାହିଁ, କି ହାତ ମଧ୍ୟ ବାହାର କରି ପାରୁ ନାହିଁ, ଏହିପରି ଭାବରେ ରହି ଶେଷରେ ବାଳକଟି ହତାଶ ହୋଇ କାନ୍ଦିବାକୁ ଲାଗିଲା । ଗୋଟିଏ ଲୋକ ଏହା ଦେଖି ବାଳକକୁ କହିଲା, "ଆରେ ବେଶି ପାଇଁ ଲୋଭ କରୁଛୁ କାହିଁକି ? ଅଳ୍ପରେ ସନ୍ତୁଷ୍ଟ ହେ । ତାହାହେଲେ ଅକ୍ଳେଶରେ ହାତଟି କାଢ଼ି ଆଣି ପାରିବୁ ।" ବାଳକଟି ସେହିପରି କରିବାରୁ କିଛି ବାଦାମ ମଧ୍ୟ ପାଇଲା, ହାତଟି ମଧ୍ୟ ବାହାରି ଆସିଲା ।

ବେଶି ପାଇଁ ଲୋଭ କଲେ ମୂଳରୁ କିଛି ହୁଏ ନାହିଁ ।



( ୭ )

## ଛଦ୍ମବେଶୀ ଗଧିଆ ।



ଥରେ ଗୋଟିଏ ଗଧିଆ ମନେ କଲା, ମୁଁ ଯେବେ ଗୋଟିଏ କପଟ ବେଶ ଧରି ପାରେ, ତାହାହେଲେ ମୋର ଆଉ ଖାଇବା ପିଇବାର ଅଭାବ ହେବ ନାହିଁ, ଗୋଟିଏ ଗୋଟିଏ କରି ମେଣ୍ଢା ପଲକୁ ଜଙ୍ଗଲରେ ବସି ଖାଇବି । ଏହିପରି ଭାବି ଖଣ୍ଡିଏ ମେଣ୍ଢା ଚମଡ଼ାରେ ଦେହକୁ ଭଲ କରି

ଘୋଡ଼ାଇ ଦେଇ ସେ ମେଣ୍ଢାପଲଙ୍କ ସାଙ୍ଗରେ ଚରିବାକୁ ଗଲେ । ଜଗୁଆଳି ମଧ୍ୟ ସେ କଥା ଜାଣି ପାରିଲା ନାହିଁ । ସନ୍ଧ୍ୟା ହେଲାରୁ ଜଗୁଆଳି ଅନ୍ୟାନ୍ୟ ମେଣ୍ଢାଙ୍କ ସଙ୍ଗେ ଗୁହାଳରେ ତାକୁ ନେଇ ଭର୍ତ୍ତି କରି ଖାଇବାକୁ ଦେଇ ତାଟି କିଳିଦେଲା । ରାତିରେ ଜଗୁଆଳିର ଗୋଟିଏ ମେଣ୍ଢା ଦରକାର ପଡ଼ିବାରୁ ସେ ଗୁହାଳକୁ ଯାଇ ସେହି ଗଧିଆକୁ ଅନ୍ଧାରରେ ମେଣ୍ଢା ବୋଲି ଭାବି ଆଣି ହାଣି ପକାଇଲା । ଗୁପ୍ତବେଶରେ ମେଣ୍ଢା ମାରିବାକୁ ଯାଇ ଶେଷରେ ଗଧିଆ ନିଜେ ହାଣ ଖାଇଲା ।

ଯେ ପରର ଅନିଷ୍ଟ ଖୋଜେ, ତାର ନିଜର ଅନିଷ୍ଟ ହୁଏ ।

(୮)

## ମୂଷିକ ସଭା ।

କି ଉପାୟ କଲେ ବିରାଡ଼ି ଭୟରୁ ରକ୍ଷା ମିଳିବ, ଏଥିପାଇଁ ଦିନେ ମୂଷାମାନେ ମିଳି ଗୋଟିଏ ସଭା କଲେ । ନାନା ବିଧର ତର୍କ ହୋଇ ଶେଷକୁ ସ୍ଥିର ହେଲା ଯେ, ବିରାଡ଼ି ବେକରେ ଗୋଟିଏ ଘଣ୍ଟି ବାନ୍ଧିଦେଲେ ସବୁଠାରୁ ଭଲ ହେବ । ତାହାହେଲେ ବିରାଡ଼ି ଆସିବାବେଳେ ମୂଷାମାନେ ଘଣ୍ଟିର ଟିଣ୍ ଟିଣ୍ ଶବ୍ଦ ଶୁଣି ସତର୍କ ହୋଇ ନିଜ ନିଜ ଗାତକୁ ପଳାଇ ଯିବେ । କିନ୍ତୁ ଯେତେବେଳେ କଥା ଉଠିଲା—ଘଣ୍ଟିଟି ବାନ୍ଧିବ କିଏ, କେହି ଆଉ ସାହସ କରି ବାହାରିଲେ ନାହିଁ ।

ମୁଖରେ କହିବାଠାରୁ କାର୍ଯ୍ୟରେ କରିବା ବହୁତ ଅନ୍ତର ।

( ୯ )

# ମାଙ୍କଡ଼ ଓ କେଉଟ ।



ଗୋଟିଏ ମାଙ୍କଡ ଗଛ ଉପରେ ବସି ଦେଖି ପାରିଲା ଯେ, କେତେଗୁଡ଼ିଏ କେଉଟ ନଦୀରେ ଜାଲ ପକାଉଅଛନ୍ତି । ସେ ଲୁଚି ରହି ସେମାନଙ୍କର ସବୁ କାର୍ଯ୍ୟ ଦେଖୁଥାଏ । କେଉଟମାନେ କିଛି ସମୟ ପରେ ମାଛଧରା ଶେଷ କରି ଜାଲକୁ ନଈ ଅଡ଼ାରେ ରଖି ଦେଇ ଘରକୁ ଖାଇବାକୁ ଗଲେ । ଜନ୍ତୁମାନଙ୍କ ମଧ୍ୟରେ ମାଙ୍କଡ଼ମାନେ ବଡ଼ ନକଲ କରି ପାରନ୍ତି । ସେମାନଙ୍କୁ ଚାଲିଯିବାର ଦେଖି ସେ ଗଛରୁ ଓହ୍ଲାଇ କେଉଟମାନଙ୍କ ପରି ଜାଲ ପକାଇବାକୁ ଚେଷ୍ଟା କଲା । ଶେଷରେ ସେହି ଜାଲରେ ନିଜେ ଛନ୍ଦି ହୋଇ ବୁଡ଼ିଯିବା ସମୟରେ ଭାବିଲା, "ମତେ ଠିକ୍ ଦଣ୍ଡ ହୋଇଛି । ଯେ ଦିନେ ଜାଲ ଧରି ନାହିଁ, ତାର ସେଥିରେ ମାଛ ଧରିବାକୁ ଯିବା କି ଆବଶ୍ୟକ ଥିଲା ?"



( ୧୦ )

## ସିଂହ ଓ ମୂଷା ।



ଦିନେ ଗୋଟିଏ ସିଂହ ନିଦରେ ଶୋଇଥିଲା, ଏପରି ସମୟରେ ଗୋଟିଏ ମୂଷା ତା ମୁହଁ ଉପର ଦେଇ ଦୌଡ଼ି ଯିବାରୁ ତାର ନିଦ ଭାଙ୍ଗିଗଲା । ସିଂହ



ରାଗରେ ଉଠି ମୂଷାକୁ ଧରି ମାରି ପକାଇବାକୁ ବସିଲା । ମୂଷା କାତର ଭାବରେ କହିଲା, "ଆଜ ଦୟା କରି ମୋତେ ଛାଡ଼ି ଦିଅ, ମୁଁ କୌଣସି ଦିନେ ତୁମର ଉପକାର କରିବି ।" ଏ କଥାରେ ସିଂହ ଟିକିଏ ହସି ତାକୁ ଛାଡ଼ି ଦେଲା ।

କିଛିଦିନ ପରେ ଦୈବାତ୍ କେତେଗୁଡ଼ିଏ ଶିକାରୀ ସେହି ସିଂହକୁ ଧରି ଖୁବ ଶକ୍ତ କରି ଦୌଡ଼ିରେ ବାନ୍ଧି ପକାଇଲେ । ସିଂହ ଭୂଇଁରେ ପଡ଼ି ଚିତ୍କାର କରିବାକୁ ଲାଗିଲା । ଗର୍ଜନରୁ ମୂଷା ସିଂହକୁ ଚିହ୍ନି ପାରି ତା ପାଖକୁ ଆସି ଦାନ୍ତରେ ଦୌଡ଼ି ସବୁ କାଟି ପକାଇଲା ଏବଂ ତାକୁ ମୁକ୍ତ କରି ଦେଇ କହିଲା, "ମୋଠାରୁ ତୁମେ ଯେ କେବେ କିଛି ଉପକାର ପାଇବ, ଏ କଥା ତୁମେ

ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲ । ମୋ କଥା ଯେତେବେଳେ ତୁମେ [illegible] ଉଡ଼ାଇ ଦେଉଥିଲ; କିନ୍ତୁ ବର୍ତ୍ତମାନ ବୁଝି ପାରୁଛ ଯେ ଗୋଟିଏ କ୍ଷୁଦ୍ର ମୂଷା ମଧ୍ୟ ପଶୁରାଜ ସିଂହର କିଛି ଉପକାର କରି ପାରେ ।"

---

( ୧୧ )

## ବାଡ଼ି ଗୋଛା ।



ଜଣେ ବୁଢ଼ାଲୋକର କେତେଗୁଡ଼ିଏ ପୁଅ ଥିଲେ । ସେମାନେ ସବୁ-ବେଳେ ଆପଣା ଆପଣା ମଧ୍ୟରେ କଳି ଲଗାନ୍ତି । ବୁଢ଼ା ସେମାନଙ୍କର କଳି ବନ୍ଦ କରିବାକୁ ନାନା ଉପଦେଶ ଦେଲା । କିନ୍ତୁ କୌଣସିଥିରେ କିଛି ଫଳ ହେଲା ନାହିଁ । ତହୁଁ ସେ ଭାବିଲା, ଭଲ ହେଲେ ବା ଅବାଧ୍ୟ ହୁଏ, ଗୋଟିଏ ପ୍ରତ୍ୟକ୍ଷ ଦୃଷ୍ଟାନ୍ତ ଦେଇ ଏମାନଙ୍କୁ ତାହା ବୁଝାଇ ଦେବି ।

ଦିନେ ସେ ସବୁ ପୁଅମାନଙ୍କୁ ଡାକି ଗୋଛାଏ ବାଡ଼ି ଆଣିବାକୁ କହିଲା । ସେମାନେ ବାଡ଼ି ଆଣିବାରୁ ସେ ଗୋଟି ଗୋଟି କରି ପ୍ରତ୍ୟେକଙ୍କ ହାତରେ ବାଡ଼ି ଗୋଛା ଦେଇ ତାକୁ ଭାଙ୍ଗିବାକୁ କହିଲା । ସମସ୍ତେ ଲାଗିପଡ଼ି ନାନା ଚେଷ୍ଟା କଲେ, କିନ୍ତୁ ବାଡ଼ି ଗୋଛାଟି ଭାଙ୍ଗି ପାରିଲେ ନାହିଁ । ତତ୍ପରେ ସେ ଗୋଛାଟି ଫିଟାଇ ଦେଇ ଖଣ୍ଡିଏ ଖଣ୍ଡିଏ ବାଡ଼ି ସେମାନଙ୍କ ହାତରେ ଦେବାରୁ ସେମାନେ ଅକ୍ଲେଶରେ ଭାଙ୍ଗିଦେଲେ । ତହୁଁ ବୁଢ଼ା ସେମାନଙ୍କୁ କହିଲା, "ବାଡ଼ିଗୁଡ଼ିକ ଏକାଠି ବନ୍ଧା ହୋଇଥିବାରୁ ତୁମେମାନେ କେହି ଭାଙ୍ଗି ପାରୁ ନ ଥିଲ । କିନ୍ତୁ ସେଗୁଡ଼ିକ ଅଲଗା ହୋଇଯିବାରୁ ସହଜରେ ଭାଙ୍ଗି ଦେଲ । ସେହିପରି ତୁମେମାନେ ଯେତେ ଦିନ ଯାଏ ପରସ୍ପର ମିଳି ମିଶି ଏକାଠି ଥିବ,

କେହି ତୁମମାନଙ୍କ କିଛି ଅନିଷ୍ଟ କରି କରିବେ ନାହିଁ । କିନ୍ତୁ ଅଲଗା ହୋଇଗଲେ ତୁମମାନଙ୍କର ବଳ ଭାଙ୍ଗିଯିବ ଓ ଶତ୍ରୁମାନେ ତୁମମାନଙ୍କୁ ହରାଇ ଦେବେ ।"

ଯୋଡ଼ାକୁ ଘୋଡ଼ା ସରି ନୁହେ ।

—※—

( ୧୨ )

## ଗଧ ଓ ଝିଣ୍ଟିକା ।



ଦିନେ ଗୋଟିଏ ଗଧ ପଡ଼ିଆରେ ଚରୁ ଚରୁ ଝିଣ୍ଟିକାମାନଙ୍କର ଚିଁ ଚିଁ ଶବ୍ଦ ଶୁଣି ଅତ୍ୟନ୍ତ ମୁଗ୍ଧ ହୋଇଗଲା । ସେ ମନେ କଲା, "ଆହା ! ମୋର ଏହିପରି ସୁନ୍ଦର ସ୍ୱର ଥାଆନ୍ତା କି ?" ସେ ଝିଣ୍ଟିକାମାନଙ୍କୁ ପଚାରିଲା, "ତୁମ୍ଭେମାନେ କଅଣ ଖାଅ ଯେ ତୁମମାନଙ୍କର ସ୍ୱର ଏଡେ ମଧୁର ହୋଇଛି ?" ସେମାନେ କହିଲେ, "କେବଳ ଶିଶିର ଆମ୍ଭମାନଙ୍କର ଆହାର ।" ଗଧ ତହୁଁ ସ୍ଥିର କଲା, ମୁଁ ଏଣିକି ଖାଲି ଶିଶିର ଖାଇବି, ତାହାହେଲେ ଶୀଘ୍ର ମୋହର ସ୍ୱର ବଦଳି ଯିବ । ଏହିପରି ଭାବି ସେ ଖିଆପିଆ ଛାଡ଼ି ଦେବାରୁ ଅଳ୍ପଦିନ ମଧ୍ୟରେ ମରିଗଲା ।

---

( ୧୩ )

## ଭାଲୁ ଓ ଦୁଇ ପଥିକ ।



ଦୁଇଟି ଲୋକ ବଣ ମଧ୍ୟରେ ବୁଲୁ ବୁଲୁ ହଠାତ୍ ବାଟରେ ଗୋଟିଏ ଭାଲୁ ଦେଖି ପାଇଲେ । ସେମାନଙ୍କ ମଧ୍ୟରୁ ଜଣେ ଅତି ଶୀଘ୍ର ଗଛ ଉପରେ ଚଢ଼ି ପତ୍ରଆଡ଼ୁଆଳରେ ଲୁଚିଗଲା । ଅନ୍ୟ ଜଣକ ଆଉ କିଛି ଉପାୟ ନ ଦେଖି ଭୂଇଁରେ ନିର୍ଜୀବ ଭାବରେ ପଡ଼ି ରହିଲା । ଭାଲୁ ତାହା ନିକଟକୁ ଆସି ତାହା

ଦେହ ସୁଙ୍ଘିବାବେଳେ ସେ ଏପରିଭାବରେ ଶ୍ୱାସ ପ୍ରଶ୍ୱାସ ବନ୍ଦ କରି ମଲା ପରି ପଡ଼ି ରହିଲା, ଯେପରି ତାହାର ପିଣ୍ଡରେ ପ୍ରାଣ ନାହିଁ । ଭାଲୁ ତାକୁ ମଡ଼ା ମନେ କରି ଛାଡ଼ି ଚାଲିଗଲା, କାରଣ ଭାଲୁମାନେ ମଡ଼ା ଦେହକୁ ଛୁଅଁନ୍ତି ନାହିଁ । ଭାଲୁ ଚାଲିଯିବା ପରେ ଅନ୍ୟ ଲୋକଟି ଗଛରୁ ଓହ୍ଲାଇ ଆସି ତାର ବନ୍ଧୁକୁ ଥଟ୍ଟାରେ ପଚାରିଲା, "କି ହୋ ! ଭାଲୁ ତମ କାନ ପାଖରେ ଭୁନ ଭୁନ କରି କଣ କହୁଥିଲା କି ?" ଉତ୍ତରରେ ଅନ୍ୟ ଜଣକ କହିଲା, 'ସେ ମୋତେ ଏହି ଉପଦେଶ ଦେଇଗଲା ଯେ, ବିପଦ ସମୟରେ ଯେଉଁ ଲୋକ ବନ୍ଧୁକୁ ପରିତ୍ୟାଗ କରେ, ତାକୁ କେବେହେଁ ବିଶ୍ୱାସ କରିବ ନାହିଁ ।"

ବିପଦକାଳରେ ଏକା ବନ୍ଧୁର ପରୀକ୍ଷା ହୁଏ ।

---

( ୧୦ )

## ପୀଡ଼ିତ ସିଂହ



ଗୋଟିଏ ସିଂହ ଅତିଶୟ ବୁଢ଼ା ହୋଇଯିବାରୁ ଆଉ ଦୌଡ଼ି ଝପଟି ଶୀକାର କରି ପାରିଲା ନାହିଁ । ଭୋକରେ ବିକଳ ହୋଇ ସେ ମନେ କଲା, ଏଣିକି ତ ବଳ ବୟସ ଗଲା, ଗୋଟିଏ କିଛି କୌଶଳ ନ କଲେ ଆଉ ଖାଇବାକୁ ମିଳିବ ନାହିଁ । ଦିନେ ସେ ଶକ୍ତ ବେମାର ପଡ଼ିଥିବାର ବାହାନା କରି ଯାଇ ନିଜ ଗୁହା ମଧ୍ୟରେ ଲୁଚି ରହିଲା ଏବଂ ପ୍ରକାରାନ୍ତରେ ଏ କଥା ସମସ୍ତଙ୍କୁ ଜଣାଇ ଦେଲା । ବଣର ଜନ୍ତୁମାନେ ଏଥିରେ ଦୁଃଖିତ ହୋଇ ଗୋଟି ଗୋଟି କରି ତା' ସଙ୍ଗେ ସାକ୍ଷାତ୍ କରିବାକୁ ଆସିଲେ । ସିଂହ ନିଶ୍ଚିନ୍ତରେ ସମସ୍ତଙ୍କୁ ଗୁହା ଭିତରେ ଗ୍ରାସ କରିବାକୁ ଲାଗିଲା । ଏହିପରି ଅନେକ ଜନ୍ତୁ ଖାଇ ସାରିବା ପରେ, ବିଲୁଆ ସିଂହର ଚାତୁରୀ ବୁଝି ପାରିଲା ।

ଦିନେ ବିଲୁଆ ସିଂହର ଗୁହା ନିକଟକୁ ଯାଇ ବାହାରେ ଥାଇ ସିଂହର ଦେହ କିପରି ଅଛି ବୋଲି ପଚାରିଲା । ସିଂହ ଉତ୍ତର କଲା, 'ମୁଁ ନୁହେ ଭାଇ,

ନୁହେ ମନ୍ଦ, ଏହିପରି ଲୁଚିରେ ଅଛୁ । ତୁମ୍ଭେ ବାହାଘରେ ଛିଡ଼ା ହୋଇଛ କାହିଁକି ? ଦୟା କରି ଟିକିଏ ଭିତରକୁ ଆସ, କଥାବାର୍ତ୍ତା ହେବା ।" ବିଲୁଆ କହିଲା, "ମତେ କ୍ଷମା କର, ମୁଁ ଭିତରକୁ ଯାଇ ପାରିବି ନାହିଁ । ମୁଁ ଦେଖୁଛି, ଗୁହା ଭିତରକୁ ଯିବାର ପାଦଚିହ୍ନ ଅନେକ ଅଛି, କିନ୍ତୁ ଫେରି ଆସିବାର ଚିହ୍ନ ଅବେ ନାହିଁ । ମୋର ଏଥିରେ ବଡ଼ ସନ୍ଦେହ ହେଉଛି ।"

ବୁଦ୍ଧିମାନ୍ ଲୋକମାନେ ଅନ୍ୟର ବିପଦ ଦେଖି ନିଜେ ସାବଧାନ ହୁଅନ୍ତି ।

—✳—

( ୧୪ )

## ବାଳକ ଓ ଗଧିଆ ।



ଗୋଟିଏ ବାଳକ ପଲେ ମେଣ୍ଢା ଚରାଉଥାଏ । ସେ କୌତୁକରେ ଅନେକ ଥର "ଗଧିଆ, ଗଧିଆ" ବୋଲି ପାଟି କରିବାରୁ ଆଖପାଖ ବିଲରେ ଯେଉଁ ଲୋକମାନେ କାମ କରୁଥାନ୍ତି, ସେମାନେ ଦୌଡ଼ି ଆସନ୍ତି । କିନ୍ତୁ ଯେତେବେଳେ ଦେଖନ୍ତି ଯେ, ବାଳକ ଖାଲି ତାମସା ଦେଖିବା ଲାଗି ଏପରି କରୁଛି, ସେମାନେ ଅପ୍ରସ୍ତୁତ ହୋଇ ଫେରି ଯାଆନ୍ତି । ପଛକୁ ଲୋକମାନେ ବିରକ୍ତ ହୋଇ ସ୍ଥିର କଲେ ଯେ, ଏଣିକି ଡାକିଲେ ଆମେ ଶୁଣିବା ନାହିଁ ।

ଦିନେ ପ୍ରକୃତରେ ଗଧିଆ ଆସିବାରୁ ବାଳକ ଭୟରେ "ଗଧିଆ, ଗଧିଆ" ବୋଲି ପାଟି କରି ଉଠିଲା, କିନ୍ତୁ ଏଥର କେହି ତା କଥା ଶୁଣିଲେ ନାହିଁ । ଫଳରେ ଏହା ହେଲା ଯେ, ବାଳକଟି ଗଧିଆ ହାତରେ ପ୍ରାଣ ହରାଇଲା ।

ଯେଉଁ ଲୋକ ବରାବର ମିଛ କହେ, ସେ ଥରେ ସତ କଥା କହିଲେ ସୁଦ୍ଧା କେହି ତାକୁ ବିଶ୍ୱାସ କରନ୍ତି ନାହିଁ ।

—✳—

## ( ୧୭ )

## କୋକିଶିଆଳି ଓ ଛେଳି ।



ଦିନେ ଗୋଟିଏ କୋକିଶିଆଳି ବାଟରେ ଯାଉ ଯାଉ ଗୋଟିଏ ଗଭୀରଆ କୂଅ ଭିତରେ ଖସି ପଡ଼ିଲା । ଉପରକୁ ଆସିବାର କୌଣସି ଉପାୟ ନ ଦେଖି ସେ କୂଅ ମଧ୍ୟରେ ଥାଏ । ଏପରି ସମୟରେ ଗୋଟିଏ ଛେଳି ଶୋଷରେ ଆଉଟ ପାଉଟ ହୋଇ ସେଠାରେ ଆସି ପହଞ୍ଚିଲା । କୋକିଶିଆଳିକୁ କୂଅ ଭିତରେ ଦେଖି ଛେଳି ତାକୁ ପାଣିଟା ଭଲ କି ମନ୍ଦ ବୋଲି ପଚାରିଲା । କୋକିଶିଆଳି ନିଜର ବିପଦ କଥା କିଛି ନ କହି ପାଣିର ଭାରି ପ୍ରଶଂସା କରିବାକୁ ଲାଗିଲା । ଛେଳି କୋକିଶିଆଳି କଥାରେ ବିଶ୍ୱାସ କରି କିଛି ନ ଭାବି ନ ଚିନ୍ତି କୂଅଭିତରକୁ ଡେଇଁପଡ଼ିଲା । ତହୁଁ କୋକିଶିଆଳି ତାକୁ ଉଭୟଙ୍କ ବିପଦ କଥା ଜଣାଇ ଦେବାରୁ ଛେଳି ମନରେ ବଡ଼ ଭୟ ହେଲା । କୋକିଶିଆଳି କହିଲା, "ଉଦ୍ଧାର ପାଇବାର କେବଳ ଗୋଟିଏ ଉପାୟ ଅଛି । ତୁମେ ଆଗଗୋଡ଼ କାନ୍ଥରେ ଦେଇ ମୁଣ୍ଡ ତଳକୁ ନୁଆଁଇ ଛିଡ଼ା ହେଲେ ମୁଁ ତୁମ୍ଭ ପିଠିଉପରେ ଉଠି ପାରି ହୋଇ ଯିବି ଏବଂ ପରେ ତୁମ୍ଭଙ୍କୁ ଉଠାଇ ନେବି ।" ଛେଳି ଏଥିରେ ରାଜି ହେବାରୁ କୋକିଶିଆଳି ତା ପିଠି ଉପରକୁ ଡେଇଁପଡ଼ି ନହାପଦରେ ଉପରକୁ ଉଠି ଚାଲିଗଲା ।

ଛେଳି କୋକିଶିଆଳିର ଚାଣ୍ଡକତା ବୁଝି ପାରି ତାକୁ ଗାଳି ଦେବାରୁ ସେ କହିଲା, 'ଆରେ ନିର୍ବୋଧ, ତୋ ଦାଢ଼ିରେ ଯେତେ ବାଳ ଅଛି ମୁଣ୍ଡରେ ଯଦି ସେତିକି ବୁଦ୍ଧି ଥାଆନ୍ତା ତୁ ବାହାରି ଆସିବାର ବାଟ ନ କରି କେବେହେଁ ଭିତରକୁ ଯାଇ ନଥାନ୍ତୁ ।" ଏହା ଶୁଣି ଛେଳି କହିଲା. "ହଁ ମୁଁ ତ ନିଜ ହାତରେ ଏହା ଅରଜିଛି, ତତେ ଦୋଷ ଦେଇ କଣ ହେବ ?"

"ଆପଣା ହସ୍ତେ ଜିହ୍ୱା ଛେଦ. କେ ତାର ଅଛି ପ୍ରତିବାଦ ।"



( ୧୭ )

## ଗଧିଆ ଓ ବଗ ।



ଗୋଟିଏ ଗଧିଆର ତଣ୍ଟିରେ ଖଣ୍ଡେ ହାଡ଼ ଲାଗିଯିବାରୁ ସେ ଗୋଟିଏ ବଗକୁ କହିଲା, "ତୁ ଯେବେ ମୋ ତଣ୍ଟି ଭିତରେ ମୁଣ୍ଡ ଭର୍ତ୍ତି କରି ହାଡ଼ଖଣ୍ଡ ବାହାର କରି ଦେବୁ, ତେବେ ମୁଁ ତୋତେ ଅନେକ ପୁରସ୍କାର ଦେବ । ବଗ ହାଡ଼ ବାହାର କରି ଦେଇ ଆଉ ଯେତେବେଳେ ପୁରସ୍କାର ମାଗିଲା, ଗଧିଆ



ଦାନ୍ତ କଡ଼ମଡ଼ କରି ପାଟି କରି କହିଲା, "ତୁ ଯେ ଗୋଟିଏ ଗଧିଆର ପାଟି ଭିତରୁ ନିରାପଦରେ ମୁଣ୍ଡ ବାହାର କରି ଆଣି ପାରିଲୁ, ଏହି ତୋର ଯଥେଷ୍ଟ ପୁରସ୍କାର । ତୁ ଆଉ ଅଧିକ କଣ ଚାହୁଁ ?"

---

( ୨୮ )

# ସିଂହ ଓ କାଠୁରିଆ ।



ଦିନେ ଜଣେ କାଠୁରିଆ ତାର ଝିଅକୁ ସଙ୍ଗରେ ନେଇ ବଣକୁ ଯାଉ-ଥିଲା । ଝିଅକୁ ଦେଖି ଗୋଟିଏ ସିଂହର ତାକୁ ବିବାହ କରିବାକୁ ଲୋଭ ଇଚ୍ଛା ହେଲା ଏବଂ ସେ ସେ କଥା ଯାଇ ତା ବାପକୁ କହିଲା । କାଠୁରିଆ ବର୍ତ୍ତମାନ ବିଷମ ସଙ୍କଟରେ ପଡ଼ି ଭାବିଲା, "ନାହିଁ କରିଦେଲେ ସିଂହ ରାଗିଯାଇ ନାନା ଅନିଷ୍ଟ କରିବ ଓ ଦେଲେ ମଧ୍ୟ ବଡ଼ ବିପଦ ।" ଏହିପରି ଭାବି ସେ ଗୋଟିଏ ଉପାୟ ସ୍ଥିର କରି ସିଂହକୁ କହିଲା "ଦେଖ, ତମକୁ କନ୍ୟା ଦେବାକୁ ମୋର କୌଣସି ଆପତ୍ତି ନାହିଁ । ତମ ପରି ସୁପାତ୍ର କେତେ ଜଣଙ୍କ ଭାଗ୍ୟରେ ଘଟେ ? ତେବେ ତୁମ୍ଭର ଦାନ୍ତ ଓ ନଖ ଦେଖି ମୋ ଝିଅ ଭୟ କରୁଛି । ତୁମେ ଯଦି କହ ମୁଁ ତୁମ୍ଭର ନଖ ଓ ଦାନ୍ତ ଉପାଡ଼ି ଦେବି, ତାହାହେଲେ ଆଉ କିଛି ବାଧା ରହିବ ନାହିଁ ।"

ସିଂହ ବୁଦ୍ଧି ହୋଇ ଏଥିରେ ରାଜି ହେଲା । କାଠୁରିଆ ତହୁଁ ତାର ସବୁ ଦାନ୍ତ ଓ ନଖଗୁଡ଼ିକ ନିର୍ମୂଳ କରି ଦେଲା । ଏହା ପରେ ସିଂହ ପୁଣି ଯେତେବେଳେ କନ୍ୟା ମାଗିଲା କାଠୁରିଆ ଆଉ ତାକୁ ଭୟ ନ କରି ଖଣ୍ଡେ ବାଡ଼ି ଧରି ଜଙ୍ଗଲ ଭିତରକୁ ତଡ଼ି ଦେଇ ଆସିଲା ।



(୧୯)

## ପିମ୍ପୁଡ଼ି ଓ ଝିଣ୍ଟିକା ।



ଶୀତକାଳରେ ଦିନେ ପିମ୍ପୁଡ଼ିମାନେ ଗ୍ରୀଷ୍ମକାଳରୁ ସାଇତିଥିବା ଖାଦ୍ୟକୁ ଖରାରେ ଶୁଖାଉଥିଲେ । ଏପରି ସମୟରେ ଗୋଟିଏ ଝିଣ୍ଟିକା ଅନାହାରରେ ମରମର ହୋଇ ସେହି ବାଟରେ ଯାଉଁ ଯାଉଁ କାତର ଭାବରେ ସେମାନଙ୍କୁ କିଛି ଖାଦ୍ୟ ମାଗିଲା । ସେମାନେ ପଚାରିଲେ, "ତୁମେ ଖରାଦିନରେ କିଛି ଖାଦ୍ୟ ସଞ୍ଚୟ କରି ରଖିଲ ନାହିଁ କାହିଁକି ?" ସେ ଉତ୍ତର କଲା, "ମୋର ସେତେବେଳେ ଆଦୌ ସମୟ ନ ଥିଲା; ଗୀତ ଗାଇବାରେ ମୋର ସମୟ କଟି ଯାଉଥିଲା ।" ପିମ୍ପୁଡ଼ିମାନେ ଘୃଣାରେ କହିଲେ, 'ତୁମେ ଯଦି ନିର୍ବୋଧ ଭାବରେ ଖରାଦିନଯାକ କେବଳ ଗୀତ ଗାଇ ଗାଇ କଟାଇ ଦେଲ, ତେବେ ଶୀତଦିନରେ ତୁମେ ନିଶ୍ଚୟ ଉପାସ ରହିବ । ସେଥିଲାଗି ଅଉ କିଏ କଣ କରିବ ?"



(୨୦)

## ଗଧ ଓ କୁକୁର ।



ଜଣେ ଲୋକର ଗୋଟିଏ ଗଧ ଏବଂ ଗୋଟିଏ ସୁନ୍ଦର କୁକୁର ଥିଲା । ଗଧଟି ଶାଳରେ ଥାଏ । ତାକୁ କୁଟା ଓ ଘାସ ଖାଇବାକୁ ଦିଆଯାଏ । କୁକୁରଟି ଅନେକ କୌତୁକ ଓ ଖେଳୁଣୀ ଜାଣିଥିଲା । ସେଥିଲାଗି ସେ ମୁନିବର ବଡ଼ ପ୍ରିୟପାତ୍ର ଥିଲା । ଯେତେ ଭଲ ଜିନିଷ ହେଉ ପଛକେ ମୁନିବ ତାକୁ କିଛିଏ ନ ଦେଇ କିଛି ଖାଉ ନ ଥିଲେ । ମୁନିବ ତାକୁ କୋଳରେ ଧରି ଅନେକ ଗେଲ କରୁଥିଲେ ଓ କୁକୁରଟି ତାଙ୍କ ଉପରେ ନାଚି କୁଦି ତାଙ୍କୁ ଖୁସି

କରାଉଥିଲା । ବିଚରା ଗଧକୁ ଜଙ୍ଗଲରୁ କାଠ ଆଣିବା, ଭାର ବୋହିବା ପ୍ରଭୃତି ନାନା କଠିନ ପରିଶ୍ରମ କରିବାକୁ ପଡୁଥିଲା ।

ଗଧ ମନେ କଲା, କୁକୁର ବଡ ସୁଖରେ ଅଛି, ମୁଁ ଖାଲି କାମ କରି କରି ମରୁଛି । ମୁଁ ଯଦି ତା ପରି ମୁନିବ ପାଖରେ ଯାଇଁ ନାଚି କୁଦା କରିବି ତାହାହେଲେ ମତେ ମୁନିବ ବଡ ଆଦର କରିବ । ଏହିପରି ଭାବି ସେ ଦିନେ ଦୌଡି ଛୁଟିଯାଇ ମୁନିବର ଘର ଭିତରେ ଯାଇଁ ପଶିଲା ଓ ଗୁଡ଼ିପିଡ଼ି ହୋଇ ମୁନିବର ଚଉକି ପାଖରେ ନାଚିବାକୁ ଲାଗିଲା । କିଛି ସମୟ ପରେ ସେ ମୁନିବ ଉପରକୁ କୁକୁର ପରି ଡେଇଁବାକୁ ଯାଇ ମେଜ ଉପରେ ଥିବା ସବୁ ଜିନିଷ ଭାଙ୍ଗି ଖଣ୍ଡ ଖଣ୍ଡ କରି ଦେଲା । ଚାକରମାନେ ଘର ଭିତରେ ଏପରି ଗୋଳମାଳ ଶୁଣିବାରୁ ଦୌଡି ଆସିଲେ ଓ ମୁନିବର ବିପଦ ଦେଖି ଗଧକୁ ପିଟି ପିଟି ଶାଳକୁ ତଡି ଦେଲେ । ଗଧ ମାଡ଼ରେ ଦରମରା ହୋଇ ଶାଳ ଭିତରେ ପଡି ରହିଲା ଓ ଭାବିଲା "ମୁଁ ମୋର ସଙ୍ଗ ଗଧମାନଙ୍କ ପରି ପରିଶ୍ରମ ନ କରି ସେ ନିଷ୍କର୍ମା କୁକୁର ପରି ଅଳସରେ ଦିନ କଟେଇବି ବୋଲି ମନେ କରୁଥିଲି । ମତେ ଏ ଦଣ୍ଡ ହୁଅନ୍ତା ନାହିଁ, ଆଉ କାହାକୁ ହୁଅନ୍ତା ?

ଯେଝା କାମ ସେଝାକୁ ସାଜେ ।

---

(୧୨)

## କୁଣ୍ଡ ଭିତରେ ଥିବା କୁକୁର ।

ଗୋଟିଏ କୁଣ୍ଡ ଭିତରେ ବଳଦମାନଙ୍କ ପାଇଁ ଦାନା ରଖା ହୋଇଥିଲା । ବଳଦମାନେ ଖାଇବାକୁ ଆସିଲାବେଳେ ଗୋଟିଏ କୁକୁର କୁଣ୍ଡ ଭିତରେ ପଶି ଭୁକି ଓ କାମୁଡ଼ିବାକୁ ଡେଇଁ କାହାରିକୁ ଖାଇବାକୁ ଛାଡି ଦେଲା ନାହିଁ । ଗୋଟିଏ ବଳଦ କହିଲା, "ଏପରି ଲୋଭୀ କୁକୁର ମୁଁ କାହିଁ ଦେଖିନାହିଁ । ସେ ନିଜେ ଖାଇବ ନାହିଁ କି କାହାରିକୁ ଖୁଆଇ ଦେବ ନାହିଁ ।"

( ୨୦ )

## ଲାଞ୍ଜକଟା ବିଲୁଆ ।



ଦିନେ ଗୋଟିଏ ବିଲୁଆ ଜାଲରେ ପଡ଼ି ପଳାଇ ଯିବା ସମୟରେ ତାର ଲାଙ୍ଗୁଡ଼ ଛିଣ୍ଡିଗଲା । ଲଜ୍ଜାରେ ସେ ଆଉ କାହାରି ନିକଟକୁ ନ ଯାଇ ଭାବିଲା,

"ଆଉ ସମସ୍ତଙ୍କ ଆଗେ ଯାଇ କିପରି ମୁହଁ ଦେଖାଇବି ? ଯଦି କୌଣସି ପ୍ରକାରେ ଅନ୍ୟ ବିଲୁଆମାନଙ୍କୁ ଏହିପରି ଲାଞ୍ଜକଟା କରି ପାରନ୍ତି, ତାହାହେଲେ ମୋର ଆଉ କିଛି ଦୁଃଖ ରହନ୍ତା ନାହିଁ ।" ଏହିପରି ମନେ କରି ସେ ଦିନେ ସବୁ ବିଲୁଆମାନଙ୍କୁ ଡାକି କହିଲା, "ଦେଖ, ଏ ଲାଞ୍ଜଟା ଯୋଗୁଁ ଆମ୍ଭେମାନେ କେଡ଼େ ଅସୁନ୍ଦର ଦିଶୁଅଛୁଁ । ଏଇଟା କାଟି ଦେଲେ ଆମଠାରୁ ବଳି ଆଉ କିଏ ସୁନ୍ଦର ଦିଶନ୍ତା ! ଆଉ ବୃଥାରେ ଏଇଟାକୁ ବୋହିବା ଫଳ କିସ ? ଖାଲି ଆମର ଅସୁବିଧା ହେଉଛି ମାତ୍ର ।" ଏହା ଶୁଣି ଗୋଟିଏ ବୁଢ଼ା ବିଲୁଆ କହିଲା, "ଭାଇ ! ତୁମ ଲାଙ୍ଗୁଡ଼ କଟି ଯାଇ ନ ଥିଲେ ତୁମେ କଦାପି ଏପରି ଉପଦେଶ ଦିଅନ୍ତ ନାହିଁ ।"

( ୧୩ )

## କେଉଟ ଓ ଛୋଟ ମାଛ ।



ଦିନେ ଗୋଟିଏ କେଉଟ ଦିନତମାମ୍ ଜାଲ ପକାଇ ଶେଷରେ ଗୋଟିଏ ଛୋଟ ମାଛ ଧରିଲା । ମାଛଟି ବହୁତ ଖୋସାମଦ କରି କେଉଟକୁ କହିଲା, "ମତେ ଧରି ତୁମର କି ଲାଭ ହେବ ? ମୋର ଦାମ୍ ବା ବର୍ତ୍ତମାନ କେତେ ହେବ, ମୁଁ ଏହିକ୍ଷଣି ନିତାନ୍ତ ଛୋଟ ହୋଇଛି । ତୁମେ ଯଦି ମତେ ନ ମାରି ନଈରେ ଛାଡ଼ିଦିଅ, ମୁଁ କେତେ ଦିନ ପରେ ଗୋଟିଏ ବଡ଼ ମାଛ ହେବି । ସେତେବେଳେ ତୁମେ ମତେ ଧରି ଧନୀଲୋକମାନଙ୍କୁ ବିକିଲେ ଅନେକ ଲାଭ କରି ପାରିବ ।" କେଉଟ କହିଲା, "କାଲେ ପରେ ବେଶି ଲାଭ ହେବ ବୋଲି ଯଦି ମୁଁ ହାତରେ ପାଇ ବର୍ତ୍ତମାନ ଛାଡ଼େ, [illegible] ତେବେ ଦୁନିଆରେ ମୋଠାରୁ ବଳି ଓଲୁ ଆଉ କିଏ ଅଛି ?"



( ୨୩ )

## କୃପଣ ଲୋକ ।



ଗୋଟିଏ କୃପଣ ଲୋକ, ତାର ଯାହା କିଛି ଟଙ୍କା ପଇସା ଥିଲା ସେ ସବୁ ଦେଇ ଖଣ୍ଡେ ସୁନା କିଣି ଆଣିଲା ଓ ତାକୁ ନେଇ ଘର ଭିତରେ ମାଟି ଖୋଳି ପୋତି ପକାଇଲା । ସେ ପ୍ରତିଦିନ ସେ ସୁନାଖଣ୍ଡିକ କାଢି ଥରେ ଦେଖେ ଓ ପୁଣି ସେହିପରି ରଖିଦିଏ । ତାର ମୂଲିଆ ଦିନେ ଏକଥା ଜାଣି ପାରି ସୁନାଖଣ୍ଡି ଖୋଳି ନେଇଗଲା । ତହିଁ ଆରଦିନ ସେ ଯେତେବେଳେ ଖୋଳି ଦେଖେ ଯେ ସେଠାରେ ଆଉ ସୁନା ନାହିଁ, ସେ ବାଳ ଛିଣ୍ଡାଇ ହାତ କଚାଡ଼ି ଭେଁ ଭେଁ କରି ରଡ଼ି ପକାଇଲା । ଜଣେ ପଡ଼ୋଶୀ ତାଠାରୁ ସବୁ କଥା ଶୁଣି କହିଲା "ତୁମେ ମିଛରେ ମନ ଦୁଃଖ କରୁଛ କାହିଁକି ? ଖଣ୍ଡିଏ ପଥର ନେଇ ସେହି ଗାତରେ ରଖି ଦେଇ ମନେ କର ଯେ ସେହି ଖଣ୍ଡ ତୁମର ସୁନା । ସୁନାଦ୍ୱାରା ତୁମର ଯେଉଁ କାର୍ଯ୍ୟ ହେଉଥିଲା, ଏହାଦ୍ୱାରା ମଧ ତାହା ହୋଇ ପାରିବ । ତୁମେ ଯେତେବେଳେ ସୁନାର କିଛି ବ୍ୟବହାର କରୁ ନ ଥିଲ ତାହା ଥିବା ନ ଥିବା ତୁମ ପକ୍ଷରେ ସମାନ ।"



( ୨୪ )

## ଜ୍ୟୋତିଷ ।



ଜଣେ ଜ୍ୟୋତିଷ ପ୍ରତିଦିନ ରାତିରେ ବାହାରକୁ ଆସି ନକ୍ଷତ୍ରଗଣନା କରନ୍ତି । ଦିନେ ସନ୍ଧ୍ୟାବେଳେ ସେ ଆକାଶକୁ ଏକଦୃଷ୍ଟିରେ ଅନାଇ ବୁଲୁ ବୁଲୁ ଅକସ୍ମାତ୍ ଗୋଟିଏ କୂଅରେ ଖସିପଡ଼ିଲେ । ପଡ଼ିଯାଇ ହାତ ଗୋଡ଼ ଛିଣ୍ଡି ଯିବାରୁ ସେ ବ୍ୟସ୍ତ ହୋଇ ବଡ଼ ପାଟି କରି ହୁରି ପକାଇଲେ । ଗୋଟିଏ ଲୋକ କୂଅ ନିକଟକୁ ଦୌଡ଼ି ଯାଇ ଯେତେବେଳେ ସବୁ କଥା ଶୁଣିଲା, ସେ କହିଲା "ସ୍ୱର୍ଗରେ କଣ ଅଛି ଜାଣିବାକୁ ଯାଇ ତୁମେ ଯେ ମର୍ତ୍ତ୍ୟରେ କଣ ଅଛି ତାହା ଜାଣି ପାରୁ ନାହିଁ !"

( ୨୬ )

## ବଣଗଧ ଓ ସିଂହ ।



ଥରେ ସିଂହ ଗୋଟିଏ ବଣଗଧକୁ ଡାକି କହିଲା, "ଦେଖ ମୋ ଦେହରେ ଜୋର ବେଶି କିନ୍ତୁ ତୁମେ ଦୌଡ଼ି ପାର ଭଲ । ଆମେ ଦୁଇ ଜଣ ଯଦି ସାଙ୍ଗ ହୋଇ ଶିକାର କରିବା ତାହାହେଲେ ଆମର ଆଉ ଖାଇବା, ପିଇବାର ଅଭାବ ହେବ ନାହିଁ । ତୁମେ ଯାହା ସଙ୍ଗେ ବଳରେ ନ ପାରିବ ମୁଁ ଯାଇ ତୁମକୁ ସାହାଯ୍ୟ କରିବି ଓ ମୁଁ ଯାହାକୁ ଧରି ନ ପାରିବି ତୁମେ ଯାଇଁ ତାକୁ ଧରିବ ।" ଗଧ ଖୁସି ହୋଇ ଏଥିରେ ରାଜି ହେଲା ।

ଦୁହେଁଯାକ ମିଳି ଅନେକଗୁଡ଼ିଏ ଜନ୍ତୁ ଶିକାର କରି ସାରିଲାରୁ ସିଂହ ତାକୁ ଭାଗ କରିବାକୁ ବସିଲା । ସମୁଦାୟ ଶିକାରକୁ ତିନି ଭାଗ କରି ଦେଇ-ସାରିଲାରୁ ସିଂହ କହିଲା, "ପ୍ରଥମ ଭାଗଟି ତ ଗଲା ମୋର ରଜାଭାଗ । ଦ୍ୱିତୀୟ ଭାଗଟି ମଧ୍ୟ ଭାଗଦାରରୂପେ ମୋର ପାଉଣା । ବାକି ରହିଲା ତୃତୀୟ ଭାଗଟି, ଏ ଭାଗଟି ତୁମେ ଯଦି ମତେ ଛାଡ଼ି ଦେଇ ଏଠାରୁ ଶୀଘ୍ର ନ ପଳାଅ ତାହାହେଲେ କହିଦେଉଛି ତୁମର ବଡ଼ ଅନିଷ୍ଟ ହେବ ।"

ଜୋର ଯାହାର ମୁଲକ ତାର ।

---

( ୨୭ )

## ବିଲୁଆ ଓ କାଉ ।



ଗୋଟିଏ କାଉ ଥଣ୍ଟରେ ଖଣ୍ଡେ ମାଂସ ଧରି ଗଛ ଉପରେ ବସିଥିଲା । ଏହା ଦେଖି ବିଲୁଆ ପାଟିରୁ ଲାଳ ଗଡ଼ିବାକୁ ଲାଗିଲା । କପରି ସେ ମାଂସ ଖଣ୍ଡକ ପାଇବ ଏଥିଲାଗି ସେ ଗୋଟିଏ କୌଶଳ ବାହାର କଲା । ବିଲୁଆ ବଡ଼

ପାଟି ଭରି କହିଲା, "କାଉ ତ ସୁନ୍ଦର ପକ୍ଷୀ ! ତାର ଗଢ଼ଣଟି ଯେପରି ସୁନ୍ଦର, ବର୍ଣ୍ଣଟି ମଧ୍ୟ ସେହିପରି । ଆହା ! ତାର ଦେହଟି ଯେପରି ସୁନ୍ଦର ସ୍ୱରଟି ଯଦି ସେହିପରି ସୁନ୍ଦର ହୋଇଥାଆନ୍ତା ତାହାହେଲେ ସେ ନିଶ୍ଚୟ ପକ୍ଷିମାନଙ୍କ ମଧ୍ୟରେ ରଜା ବୋଲାଉଥାନ୍ତା"। ବିଲୁଆ ଏତକ ବର୍ଣ୍ଣନା କରି କହିଥିଲା। କାଉ ସେ କଥା ବୁଝି ନ ପାରି ଗଲାଖଙ୍କାରି ଦେଇ ଗୀତ ଗାଇବାକୁ ଆରମ୍ଭ କଲାବେଳକୁ ମାଂସଖଣ୍ଡି ତଳେ ଖସି ପଡ଼ିଲା । ବିଲୁଆ ସେ ଖଣ୍ଡିକ ଶୀଘ୍ର ଗୋଟାଇ ନେଇ କାଉକୁ କହିଲା, "ଭାଇ କାଉ, ତମର ସ୍ୱରଟି ବେଶ ଭଲ, କିନ୍ତୁ ତମର ବୁଦ୍ଧିଶୁଦ୍ଧି ଅଦୌ ନାହିଁ ।"

ଶଠ ଲୋକଙ୍କୁ ଠକାଇବାକୁ ଖୋସାମଦଠାରୁ ଆଉ ଭଲ ଉପାୟ ନାହିଁ ।

— ❖ —

( ୨୮ )

## ପୀଡ଼ିତ ହରିଣ



ଗୋଟିଏ ହରିଣର ଦେହ ଦୁଃଖ ହେବାରୁ ସେ ଆଉ କେଉଁ ଆଡ଼େ ଚରି ବୁଲି ନ ପାରି ପଡ଼ିଆର ଗୋଟିଏ କଣରେ ପଡ଼ି ରହିଲା । ତାର ବନ୍ଧୁ ବାନ୍ଧବମାନେ ଏ ଖବର ପାଇ ତାକୁ ସମ୍ଭାଳିବାକୁ ଆସିଲେ । ଆସି ତା ପାଖରେ ଯେଉଁ ଘାସ ପତ୍ରଗୁଡ଼ିକ ଥିଲା ସମସ୍ତେ ପୁଳାଏ ପୁଳାଏ ଖାଇ ଖାଇ ଶେଷ କରିଦେଲେ । ବିଚାରା ହରିଣଟି ଯାହା ଟିକିଏ ଭଲ ହୋଇ ଆସୁଥିଲା କିଛି ଖାଇବାକୁ ନ ପାଇ ଦୁଇ ଦିନରେ ମରିଗଲା ।

କୁସଙ୍ଗୀମାନଙ୍କଦ୍ୱାରା ଇଷ୍ଟ ଅପେକ୍ଷା ଅନିଷ୍ଟ ବେଶି ହୁଏ ।



( ୯ )

## ବାଲୁଅ ଓ ମେଣ୍ଢା ।



ଥରେ ବାଲୁଅମାନେ ମେଣ୍ଢାମାନଙ୍କୁ କହିଲେ, "ଦେଖ, ତମ ଆମ ମଧ୍ୟରେ କାହିଁକି ସବୁବେଳେ ଏପରି ଗୋଟାଏ ବିବାଦ ଥିବ ? ଚାଲ, ଏଥର ଏଣିକି ଆମ୍ଭେମାନେ ଏକସଙ୍ଗେ ମିଳି ମିଶି ରହିବା । ଏହି କୁକୁରଗୁଡ଼ିକ ହେଉଛନ୍ତି ସବୁ ଅନର୍ଥର ମୂଳ । ଯେଉଁବେଳେ ଆମ୍ଭେମାନେ ଟିକିଏ ତମ ନିକଟକୁ ଆସିବାକୁ ଚାହୁଁ ସେମାନେ ଭୋ ଭୋ କରି ଆମ୍ଭମାନଙ୍କୁ ଆଉ ପାଖରେ ପୂରାଇ ଦିଅନ୍ତି ନାହିଁ । ଆଉ ତମମାନଙ୍କର କିଛି ଅନିଷ୍ଟ ନ କଲେ ସୁଦ୍ଧା ଆମ୍ଭମାନଙ୍କୁ କାମୁଡ଼ିବାକୁ ନିଅନ୍ତି ! ଏମାନଙ୍କ ଲାଗି ଆମ୍ଭମାନଙ୍କ ମଧ୍ୟରେ ଗୋଟାଏ ବିରୋଧ ରହି ଯାଉଅଛି । ସେମାନଙ୍କୁ ପାଖରୁ ତଡ଼ି ଦିଅ, ଦେଖିବ ସବୁ ଗୋଳମାଳ ତୁଟି[illegible] ମେଣ୍ଢାମାନଙ୍କର ବୁଦ୍ଧି ଅଳ୍ପ । ସେମାନେ ଏ ଚାତୁରୀ ବୁଝି ନ ପାରି ବାଲୁଅମାନଙ୍କ କଥାରେ ପଡ଼ି କୁକୁରମାନଙ୍କୁ ପାଖରୁ ବାହାର କରିଦେଲେ । ଶେଷରେ ଆଉ କେହି ଜଗୁଥିଲେ ନାହାନ୍ତି ଦେଖି ବାଲୁଅମାନେ ନିଶ୍ଚିନ୍ତରେ ମେଣ୍ଢାପଲକୁ ନଷ୍ଟ କରିବାକୁ ଲାଗିଲେ ।



( ୩୦ )

## ଗଧ ଓ ବାଘ ।



ଗୋଟିଏ ଗଧ ପଡ଼ିଆରେ ଚରୁ ଚରୁ ଦେଖି ପାରିଲା ଯେ ଗୋଟିଏ ବାଘ ତାକୁ ଧରିବାକୁ ଆସୁଅଛି । ସେ ତତ୍‌କ୍ଷଣାତ୍ ଗୋଟାଏ ବାହାନା କରି ଖୋଣ୍ଡେଇ



ଖୋଣ୍ଡେଇ ଚାଲିବାକୁ ଲାଗିଲା । ବାଘ ଅଧିକାହିଁକି ଖୋଣ୍ଡଉଛୁ ବୋଲି ପଚାରିବାରୁ ଗଧ କହିଲା "ଭାଇ, କଅଣ କହିବି, ଗୋଟାଏ ବାଡ଼ ଡେଇଁ ଯାଉଁ ଯାଉଁ ଗୋଟାଏ ବଡ଼ ମୁନିଆଁ କଣ୍ଟା ଗୋଡ଼ରେ ଗଳିଗଲା । ମୋ ଗୋଡ଼ରୁ କଣ୍ଟାଟି ବାହାର କରିଦେଇ ମତେ ଖାଅ, ତା ନ ହେଲେ ତମ ତଣ୍ଟିରେ କଣ୍ଟା ଲାଗିବ !" ବାଘ ଏଥିରେ ରାଜି ହୋଇ ଗଧ ଗୋଡ଼ ଦେଖି କଣ୍ଟା କେଉଁଠାରେ ଅଛି ବୋଲି ଖୁବ୍ ମନ ଦେଇ ଖୋଜିବାକୁ ଲାଗିଲା । ଗଧ ଏପରି ସନ୍ଧିରେ ବାଘ ମୁହଁରେ ଗୋଟିଏ ଶକ୍ତ ଲାତ ମାରିଦେଇ ଦୌଡ଼ି ପଳାଇଗଲା । ବିଚରା ବାଘ କଷ୍ଟରେ ଛଟପଟ ହୋଇ ଭାବିଲା, "ମତେ ବେଶ୍ ଶାସ୍ତି ହୋଇଛି । ମୋ ବାପ ମତେ କେବଳ କଂସେଇ ବିଦ୍ୟା ଶିଖେଇ ଥିଲା । ମୁଁ ଡାକ୍ତରି ବ୍ୟବସାୟ କରିବାକୁ ଗଲି କାହିଁକି ?"

( ୩୧ )

## ପିମ୍ପୁଡ଼ି ଓ କାପ୍ତା ।

ଦିନେ ଗୋଟିଏ ପିମ୍ପୁଡ଼ି ପାଣି ପିଇବାକୁ ନଈକୁ ଯାଇ ସୁଅରେ ଭାସି ଗଲା । ସେ ବୁଡ଼ିଯିବାକୁ ବସିଛି ଏପରି ସମୟରେ ଗୋଟିଏ କାପ୍ତା ନଈକୂଳରେ ଗୋଟିଏ ଗଛରେ ବସି ଏହା ଦେଖି ପାରିଲା । ସେ ଦୟା କରି ଗଛରୁ ଗୋଟିଏ ପତ୍ର ଛିଣ୍ଡାଇ ପିମ୍ପୁଡ଼ି ପାଖକୁ ପକାଇ ଦେଲା । ପିମ୍ପୁଡ଼ି ପତ୍ର ଉପରେ ଚଢ଼ି ଯାଇ କୂଳରେ ଲାଗିଲା ଓ ସେଥିରେ ତାର ଜୀବନ ରକ୍ଷା ହେଲା ।

କିଛିଦିନ ପରେ ଗୋଟିଏ କେଳା ସେହି କାପ୍ତାକୁ ଧରିବା ଲାଗି ଗଛରେ ନଳ ଲଗାଇଥିଲା । ପିମ୍ପୁଡ଼ି ଏହା ଦେଖି ପାରି କେଳାକୁ ଖୁବ୍ ଜୋରରେ ଗୋଡ଼ରେ କାମୁଡ଼ି ଦେବାରୁ ତାହା ହାତରୁ ନଳ ଖସି ପଡ଼ିଲା ଓ କାପ୍ତାଟି ଉଡ଼ି ଯାଇ ରକ୍ଷା ପାଇଲା ।

ଉପକାରୀ ଲୋକର ଉପକାର ବୃଥା ହୁଏ ନାହିଁ । ଉଧାର ସେବକ କେବେ ତାନ ପାଶ ନୁହେଁ ।



( ୩୨ )

## ତନ୍ତୀ, ତାର ପୁଅ ଓ ଗଧ ।



ଗୋଟିଏ ତନ୍ତୀ ଓ ତାର ପୁଅ ହାଟରେ ବିକ୍ରି କରିବା ପାଇଁ ଗୋଟିଏ ଗଧକୁ ଅଡ଼ାଇ ନେଇ ଯାଉଥିଲେ । କିଛି ଦୂର ଯାଇ ସେମାନେ ଗୋଟିଏ କୂଅ ନିକଟରେ ଗୁଡ଼ିଏ ସ୍ତ୍ରୀଲୋକ କଥାବାର୍ତ୍ତା ହେଉଥି[illegible] ଦେଖିଲେ । ଏମାନଙ୍କ

ଦେଖି ସେମାନଙ୍କ ମଧ୍ୟରୁ ଜଣେ କହିଲା, "ଦେଖ, ଏପରି ଲୋକ ତମେ କେବେ କେଉଁଠି ଦେଖିଛ ? ଗଧଟାକୁ ଚଲାଇ ନେଉଛନ୍ତି ପଛକେ ତା ଉପରେ କେହି ଚଢ଼ିବାକୁ ନାହିଁ ।" ଏ କଥା ଶୁଣି ବୁଢ଼ା ଶୀଘ୍ର ତା ପୁଅକୁ ଗଧ ଉପରେ ଚଢ଼ାଇ ଦେଲା ଓ ନିଜେ ସଙ୍ଗେ ସଙ୍ଗେ ଚାଲିଲା ।

ଆଉ କିଛି ଦୂର ଯାଇ ସେମାନେ ଦଳେ ବୁଢ଼ାଲୋକ ତର୍କ କରି କରି ଆସୁଥିବାର ଦେଖିଲେ । ସେମାନଙ୍କ ମଧ୍ୟରୁ ଜଣେ କହିଲା, "ମୁଁ ଯାହା କହୁଥିଲି ସତ କି ନା, ହେଇ ଦେଖ । ଆଜିକାଲି ବୁଢ଼ାଲୋକଙ୍କୁ ମାନ୍ୟ କରୁଛି କିଏ ? ଦେଖୁଛ ତ ସେ ଅଳସୁଆ ଟୋକାଟା ଗଧ ଉପରେ ବସିଛି, ଆଉ ବିଚରା ବୁଢ଼ାଟି ଚାଲି ଚାଲି ଯାଉଛି ।" ଏ କଥା ଶୁଣି ବୁଢ଼ା ପୁଅକୁ ଓହ୍ଲାଇ ଦେଇ ନିଜେ ଗଧ ଉପରେ ବସିଲା ।

ଏହିପରି ଭାବରେ ସେମାନେ ଅଳ୍ପ ଦୂର ଯାଇଛନ୍ତି, ଏପରି ସମୟରେ ବାଟରେ ଆଉ ଦଳେ ସ୍ତ୍ରୀଲୋକଙ୍କୁ ଭେଟିଲେ । ସେମାନଙ୍କ ମଧ୍ୟରୁ ଜଣେ କହିଲା, "ଦେଖୁଛ, ସେ ବୁଢ଼ାଟା କେଡ଼େ ଆପସୁଖୀ; ନିଜେ ଗଧ ଉପରେ ବସି ଯାଉଛି, ଆଉ ପିଲାଟିକୁ ଚଲାଇ ଚଲାଇ ନେଉଛି ।" ବୁଢ଼ା ତତ୍‌କ୍ଷଣାତ୍ ପୁଅକୁ ନେଇ ତା ପଛରେ ବସାଇ ଦେଲା ।

ଏପରି ଭାବରେ ସେମାନେ ପ୍ରାୟ ସହରର ପାଖାପାଖି ହୋଇଯିବାରୁ ଜଣେ ଲୋକ ପଚାରିଲା, "ଭାଇ ! ଏ ଗଧଟି କଣ ତମର ?" ବୁଢ଼ା ହଁ କରିବାରୁ ସେ କହିଲା, "ତମେ ତା ଉପରେ ଯେଉଁ ବୋଝ ଦେଇଛ ସେଥିରୁ ଏ ଗଧ ତମର ବୋଲି ତ ବିଶ୍ୱାସ ହେଉ ନାହିଁ । କାହିଁକି ? ତମେ ଦୁହେଁଯାକ ତ ବିଚାରିଲେ ଏହିକ୍ଷଣି ଗଧଟାକୁ ବୋହି ନେଇ ପାରନ୍ତ ।" ଏ କଥା ଶୁଣି ବୁଢ଼ା ଓ ତାର ପୁଅ ଗଧରୁ ଓହ୍ଲାଇ ପଡ଼ି ତାର ସବୁ ଗୋଡ଼ ବାନ୍ଧି ଦେଲେ ଓ ଦୁହେଁଯାକ ଗୋଟାଏ ବାଉଁଶରେ ତାକୁ ବୋହି ଚାଲିବାକୁ ଲାଗିଲେ । ଏ

ଏ ଦୃଶ୍ୟ ଦେଖି ଅନେକ ଲୋକ ସେଠାରେ ଗଦା ହୋଇ ପଡ଼ି ହସିବାକୁ ଲାଗିଲେ । ଅବଶେଷରେ ଗଧ ଏ ସବୁ ଗୋଳମାଳ ଦେଖି ଦଉଡ଼ି ଛିଣ୍ଡାଇ ବାଉଁଶ ଉପରୁ ଡେଇଁ ନଦୀ ଭିତରେ ଯାଇ ପଡ଼ିଲା । ବୁଢ଼ାଟି ଅତ୍ୟନ୍ତ ଲଜ୍ଜିତ ହୋଇ ଗଧଟିକୁ ହରାଇ ଘରକୁ ଫେରି ଆସିଲା ଓ ବୁଝି ପାରିଲା ଯେ, ସମସ୍ତଙ୍କୁ ତୁଷ୍ଟ କରିବାକୁ ଗଲେ କାହାରିକୁ ଖୁସି କରି ହୁଏ ନାହିଁ ।



( ୨୩ )

## ବାଳକ ଓ ବାଟୋଇ ।

ଗୋଟିଏ ବାଳକ ନଦୀରେ ଗାଧୋଉ ଗାଧୋଉ ବେଶି ପାଣିକୁ ଖସିଯିବାରୁ ଥଇ ତାର ହାତ ଗୋଡ଼ ପାଇଲା ନାହିଁ । ସେ ବୁଡ଼ିଯିବାକୁ ବସିଲା । ଏପରି ସମୟରେ ସେହି ବାଟ ଦେଇ ଗୋଟିଏ ଲୋକ ଯାଉଥିବାର ଦେଖି ସେ ବଡ଼ ପାଟି କରି ତାକୁ ଡାକିଲା । ଲୋକଟି ତାକୁ ପାଣିରୁ ଉଠାଇ ଆଣିବାକୁ ନ ଯାଇ ନିଶ୍ଚିନ୍ତ ଭାବରେ କୂଳରେ ଠିଆ ହୋଇ କାହିଁକି ତୁ ଏତେ ପାଣିରେ ଗଲୁ ବୋଲି ବାଳକକୁ ଗାଳି ଦେବାକୁ ଲାଗିଲା ।

ବାଳକଟି କହିଲା, "ମହାଶୟ, ଆଗେ ମୋର ଜୀବନଟା ରଖ, ପରେ ପଛେ ଯେତେ ଇଚ୍ଛା ଗାଳି ଦେବ ।"

ସାହାଯ୍ୟ ନ କରି ଛୁଚ୍ଛା ଉପଦେଶ ଦେଲେ କିଛି ଫଳ ହୁଏ ନାହିଁ ।



( ୩୪ )

## ଗଧିଆ ଓ ମେଣ୍ଢାଜଗୁଆଳ ।



ଗୋଟିଏ ଗଧିଆ ମେଣ୍ଢାପଲଙ୍କ ପଛେ ପଛେ ବରାବର ବୁଲୁଥାଏ ଓ କାହାର କେବେ କିଛି ଅନିଷ୍ଟ କରେ ନାହିଁ । ମେଣ୍ଢାଜଗୁଆଳ ପ୍ରଥମେ ତାକୁ ଶତ୍ରୁ ମନେ କରି ସତର୍କ ହୋଇ ତା ଉପରେ କଡ଼ା ନଜର ରଖିବାକୁ ଲାଗିଲା । କିନ୍ତୁ ଯେତେବେଳେ ଦେଖିଲା ଯେ ମେଣ୍ଢାମାନଙ୍କ ମେଳରେ ରହି ସୁଦ୍ଧା ସେ କାହାର କିଛି ଅନିଷ୍ଟ କରୁ ନାହିଁ, ଜଗୁଆଳ ମନରୁ ସନ୍ଦେହ ଚାଲିଗଲା । ସେ ଗଧିଆକୁ ମେଣ୍ଢାଙ୍କର ଶତ୍ରୁ ମନେ ନ କରି ସେମାନଙ୍କର ଜଗୁଆଳ ବୋଲି ଭାବିଲା । ଦିନେ ତାର ସହରରେ କାମ ଥିବାରୁ ସେ ମେଣ୍ଢାମାନଙ୍କୁ ତା ଜିମାରେ ଛାଡ଼ିଦେଇ ଚାଲିଗଲା । ଗଧିଆ ଏ ସୁବିଧା ଦେଖି ପଲରୁ ଅନେକ ମେଣ୍ଢା ମାରି ପକାଇଲା ।

ଦୁଷ୍ଟ ଲୋକକୁ କଦାପି ବିଶ୍ୱାସ କରିବ ନାହିଁ ।



( ୩୫ )

## ଜ୍ୟୋତିଷ ।



ଜଣେ ଜ୍ୟୋତିଷ ବଜାର ମଧ୍ୟରେ ବସି ଲୋକମାନଙ୍କ ହାତ ଦେଖି କାହା ଭାଗ୍ୟରେ କଣ ଅଛି ସବୁ କହୁଥିଲେ । ହଠାତ୍ ଗୋଟିଏ ଲୋକ ଦୌଡ଼ି ଆସି ତାଙ୍କୁ କହିଲା, "ତମ ଘର କବାଟ ଭାଙ୍ଗି ଚୋରମାନେ ସବୁ ଜିନିଷପତ୍ର ବୋହି ନେଇ ଯାଉଅଛନ୍ତି" । ଏ କଥା ଶୁଣି ଜ୍ୟୋତିଷ ତରତର ହୋଇ ଘରକୁ

ଦୌଡ଼ିଲେ । ଜଣେ ଲୋକ ତାଙ୍କୁ ବାଟରେ ଦେଖି କହିଲା, "ହହୋ, ତୁମେ ତ ଅନ୍ୟ ଲୋକମାନଙ୍କର କଣ ହେବ ଗଣନା କରି କହୁଛ, ତମ ନିଜ ଭାଗ୍ୟରେ କଣ ହେବ ଜାଣି ପାରିଲ ନାହିଁ କପରି ?"

"କହି ଦେଉଥାଏ ପରକୁ, ବୁଦ୍ଧି ନ ଦଶଇ ଘରକୁ ।"

—※—

( ୩୬ )

## ବିଲୁଆ ଓ ମାଙ୍କଡ଼ ।



ଗୋଟିଏ ବିଲୁଆ ଓ ଗୋଟିଏ ମାଙ୍କଡ଼ ଏକ ସଙ୍ଗରେ ବାଟରେ ଯାଉଥିଲେ, ଯାଉ ଯାଉ ସେମାନେ ଗୋଟିଏ ମଶାଣିପଦାରେ ଗୁଡ଼ିଏ ଦେଉଳ ଦେଖି ପାରିଲେ । ମାଙ୍କଡ଼ କହିଲା, "ଏ ଯେଉଁ ସବୁ ଦେଉଳ ଦେଖୁଛ ଏ ସବୁ ଆମ ପୂର୍ବପୁରୁଷମାନଙ୍କ ସ୍ମୃତିରକ୍ଷା ଲାଗି ତୋଳା ହୋଇଛି । ସେମାନେ ଭାରି ନାମଯାଦା ଲୋକ ଥିଲେ । ସେମାନେ ଅନେକ ଭଲ କାମ କରିଥିଲେ ଓ ସେମାନଙ୍କର ଯଶ ଦୁନିଅରେ ବ୍ୟାପି ଯାଇଥିଲା ।" ବିଲୁଆ କହିଲା "ଯାହାହେଉ ତୁମେ ମିଛ କହିବାର ଗୋଟିଏ ଭଲ ଫିକର ବାହାର କରିଛ । ତୁମେ ଏପରି ଗୋଟିଏ କଥା କହୁଛ ଯାହା ମିଛ ବୋଲି ପ୍ରମାଣ କରିବାକୁ ମୋର ଉପାୟ ନାହିଁ । ତମ ପୂର୍ବପୁରୁଷମାନେ ଏଠାରେ ନାହାନ୍ତି କି ଯେଉଁମାନେ ଏ ଦେଉଳ ତୋଳାଇଛନ୍ତି ସେମାନେ ନାହାନ୍ତି ।"

ମିଛ କଥାଟା ବହୁ ଶୀଘ୍ର ଧରା ପଡ଼ିଯାଏ ।

———

( ୩୭ )

## କୁକୁର ଓ ତାର ଛାଇ ।

ଗୋଟିଏ କୁକୁର ମୁହଁରେ ଖଣ୍ଡେ ମାଂସ ଧରି ଗୋଟିଏ ପୋଲ ଉପର ଦେଇ ନଈ ପାରି ହୋଇ ଯାଉଥିଲା । ନଈପାଣିରେ ତାର ଯେଉଁ ଛାଇ ପଡଥିଲା,



ତାକୁ ଦେଖି ସେ ମନେ କଲା ଆଉ ଗୋଟିଏ କୁକୁର ଖଣ୍ଡେ ବଡ଼ ମାଂସ ନେଇ ଯାଉଛି । ଏହି ବଡ଼ ମାଂସଖଣ୍ଡ ଲୋଭରେ ସେ ନିଜ ମାଂସଖଣ୍ଡ ଛାଡ଼ି ଦେଇ ଅନ୍ୟ କୁକୁରକୁ ଆକ୍ରମଣ କରିବାକୁ ଗଲାବେଳକୁ ଦେଖିଲା ଯେ ଖାଲି ନିଜର ମାଂସଖଣ୍ଡିକ ନଈ ସୁଅରେ ପଡି ଭାସି ଯାଉଛି । ଶେଷରେ ସେ ହତାଶ ହୋଇ ଭାବିଲା, "ଯେଉଁମାନେ ଲୋଭରେ ପଡ଼ି ଅନିଶ୍ଚିତ ଲାଭ ଲାଗି ଦୌଡ଼ନ୍ତି ତାଙ୍କର ଏହି ଦଶା ଘଟେ ।"

— ୦ —

( ୩୮ )

## ପଶୁ, ପକ୍ଷୀ ଓ ବାଦୁଡ଼ି ।



ପଶୁମାନଙ୍କ ସଙ୍ଗେ ପକ୍ଷିମାନଙ୍କର ଯୁଦ୍ଧ ଲାଗିବାରୁ କେତେବେଳେ ଏ ପକ୍ଷ ଓ କେତେବେଳେ ସେ ପକ୍ଷ ଜୟୀ ହୁଅନ୍ତି । ବାଦୁଡ଼ି ଯୁଦ୍ଧର ଏପରି ଅନିଶ୍ଚିତ ଫଳ ଦେଖି କେତେବେଳେ ପଶୁ ଓ କେତେବେଳେ ପକ୍ଷୀ ବୋଲି ପରିଚୟ ଦେଇ ଯେତେବେଳେ ଯେଉଁ ପକ୍ଷ ପ୍ରବଳ ହୁଅନ୍ତି ସେତେବେଳେ ସେହି ପକ୍ଷ ସଙ୍ଗେ ମିଶେ । ଯୁଦ୍ଧ ପରେ ଯେତେବେଳେ ସନ୍ଧି ହେଲା ଉଭୟ ପକ୍ଷ ବାଦୁଡ଼ିର ଶଠତା ବୁଝି ପାରି ତାକୁ ବିଶ୍ୱାସଘାତକ ବୋଲି ପାଖରୁ ତଡ଼ି ଦେଲେ । କେହି ଆଉ ତା ସଙ୍ଗେ କିଛି ସମ୍ପର୍କ ରଖିଲେ ନାହିଁ । ସେହି ଦିନଠାରୁ ସେ ଲଜ୍ଜାରେ ଦିନବେଳେ ଅନ୍ଧକାର ସ୍ଥାନରେ ଲୁଚି ରହେ ଓ ରାତିରେ ଏକୁଟିଆ ଚାରିଆଡ଼େ ଉଡ଼ି ବୁଲେ ।

—❀—

( ୩୯ )

## ଗଧ ଓ ତାର ଖରିଦ୍‌ଦାର ।



ଜଣେ ଲୋକ ଗୋଟିଏ ଗଧ କିଣିବାକୁ ଯାଇ ଗଧର ମୁନିବକୁ କହିଲା: ମୁଁ ଗଧଟିକୁ କିଣିବା ପୂର୍ବରୁ ଥରେ ପରୀକ୍ଷା କରି ଦେଖିବି । ମୁନିବ ଏଥିରେ ରାଜି ହେବାରୁ ସେ ଗଧଟିକୁ ଘରକୁ ନେଇଗଲା ଓ ତାର ଯେଉଁଠାରେ ସବୁ ଗଧଯାକ ଦାନା ଖାଉଥିଲେ ସେହିଠାରେ ନେଇ ତାକୁ ଛାଡ଼ି ଦେଲା । ଏ ଗଧଟି ସାଙ୍ଗେ ସାଙ୍ଗେ ଅନ୍ୟାନ୍ୟ ଗଧମାନଙ୍କ ସଙ୍ଗ ଛାଡ଼ି ସବୁଠାରୁ ଅଳସୁଆ ଓ ପେଟୁ ଗଧମାନଙ୍କ ମେଳରେ ଯାଇଁ ଯୋଗ ଦେଲା । ଲୋକଟି ଏହା ଦେଖି ଗଧକୁ ବାନ୍ଧି ତାର ମୁନିବ ନିକଟକୁ ନେଇଗଲା ।

ମୁନିବ ଯେତେବେଳେ ପଚାରିଲା ଯେ ଏତେ ଅଳ୍ପ ସମୟ ମଧ୍ୟରେ ତୁମେ କପରି ପରୀକ୍ଷା କଲ, ସେ ଲୋକଟି ଉତ୍ତରରେ କହିଲା, "ପରୀକ୍ଷା କରିବାର ଆଉ ଆବଶ୍ୟକ ନାହିଁ । ମୁଁ ଜାଣେ ଯେ ଯେ ସବୁ ଗଧଙ୍କୁ ଛାଡ଼ି ଯାଇ ଯେଉଁ ନିଷ୍କର୍ମୀ ସଙ୍ଗୀମାନଙ୍କ ସଙ୍ଗେ ଯୋଗ ଦେଲା, ସେ ସେହିପରି ଠିକ ଗୋଟାଏ ହେବ । ଏପରି ଗଧକୁ ମୁଁ କିଣିବାକୁ ଇଚ୍ଛେ ନାହିଁ ।"

ଲୋକର ସଙ୍ଗୀମାନଙ୍କ ଦ୍ୱାରା ଲୋକକୁ ଚିହ୍ନାଯାଏ ।



( ୪୦ )

## ମାତା ଓ ଗଧିଆ ।



ଗୋଟିଏ ଭୋକିଲା ଗଧିଆ ଦିନେ ସକାଳେ ଛପି ଛପି ଏଆଡ଼େ ସେଆଡ଼େ ଶିକାର ଖୋଜି ବୁଲୁଥିଲା । ଜଙ୍ଗଲ ନିକଟରେ ଥିବା ଗୋଟିଏ କୁଡ଼ିଆ ଘର ବାଟେ ଯାଉ ଯାଉ ସେ ଶୁଣି ପାରିଲା ଯେ ଗୋଟିଏ ସ୍ତ୍ରୀଲୋକ ତାର ପୁଅକୁ ଡରାଇ କରି କହୁଛି "ତୁନି ହ, ନ ହେଲେ ମୁଁ ତତେ ଏହି ଝରକା-ବାଟେ ପଦାକୁ ପକାଇ ଦେବି ଯେ ଗଧିଆ ଆସି ନେଇଯିବ ।" ଗଧିଆ ଏ କଥା ଶୁଣି କେତେବେଳେ ପିଲାଟି ପଡ଼ିଲେ ଖାଇବ ଏହି ଆଶାରେ ସେହିଠାରେ ବସି ରହିଲା । ବସି ବସି ପୁଣି ସନ୍ଧ୍ୟାବେଳେ ଶୁଣି ପାଇଲା ଯେ ସେହି ସ୍ତ୍ରୀଲୋକ ତାର ପୁଅକୁ ଗେଲ କରି କହୁଛି, "ଆମ ପୁଅ ତୁନି ହେଲାଣି, ଏଥର ଯେବେ ଗଧିଆ ଆସିବ ତାକୁ ମାରି ପକାଇବୁଁ ।" ଗଧିଆ ଏତିକ ଶୁଣି ଭୋକ ଶୋଷରେ ବଡ଼ କଷ୍ଟ ପାଇ ହତାଶ ହୋଇ ଘରକୁ ଫେରିଗଲା । ଗୁହା ନିକଟରେ ପହଞ୍ଚିଲାରୁ ବାଘୁଣୀ ତାକୁ ପଚାରିଲା ତୁମେ କାହିଁକି ଆଜି ଏପରି କ୍ଳାନ୍ତ ହୋଇ କିଛି ନ ଖାଇ ନ ପିଇ ଫେରି ଆସିଲ ? କେବେ ତ ତୁମର ଏପରି ହୁଏ ନାହିଁ । ଗଧିଆ କହିଲା, "ଏହାର କାରଣ ଏହି ଯେ ମୁଁ ଜଣେ ସ୍ତ୍ରୀଲୋକର କଥାରେ ବିଶ୍ୱାସ କରିଥିଲି ।"

— ❖ —

( ୪୧ )

## ଗଧ ଓ ଘୋଡ଼ା ।



ଗୋଟିଏ ଘୋଡ଼ା ଗଛ ମୂଳରେ ବନ୍ଧା ହୋଇ ଦାନା ଖାଉଥିଲା; ଗୋଟିଏ ଗଧ ସେଠାକୁ ଆସି ଘୋଡ଼ାକୁ ଦାନା ମାଗିବାରୁ ସେ କହିଲା, "ହଁ, ମୋର ମର୍ଯ୍ୟାଦା ରକ୍ଷା କରିବା ଲାଗି ମୁଁ ଯାହା ଖାଉଛି ସେଥିରୁ ଯଦି ବଳେ ତେବେ ତମକୁ କିଛି ଦେଇ ପାରେ । କିନ୍ତୁ ମୁଁ ଯେତେବେଳେ ମୋ ଶାଳରେ ପହଞ୍ଚିବି ସେତେବେଳେ ଯଦି ତମେ ସେଠାକୁ ଯାଅ ତାହାହେଲେ ମୁଁ ତମକୁ ଏକ ବସ୍ତା ଦାନା ଦେବି ।" ଗଧ ଉତ୍ତର କଲା, "ହଉ, ତମକୁ ଖୁବ ଧନ୍ୟବାଦ ! ତୁମେ ଯେତେବେଳେ ମତେ ସାମାନ୍ୟ ଗୋଟିଏ ଜିନିଷ ଦେବାକୁ ନାରାଜ, ତୁମେ ଯେ ସେତେବେଳେ ମତେ ବେଶି ଦେବ ଏ କଥା ମୁଁ ବିଶ୍ୱାସ କରିବି କିପରି ?"



( ୪୨ )

## କାଉ ଓ ମେଣ୍ଢା ।



ଥରେ ଗୋଟିଏ ଦୁଷ୍ଟ କାଉ ଗୋଟିଏ ମେଣ୍ଢାର ପିଠି ଉପରେ ବସି-ପଡ଼ି ତାକୁ ଖୁମ୍ପିବାକୁ ଲାଗିଲା । ମେଣ୍ଢା ଅସ୍ଥିର ହୋଇ ପିଠି ଝାଡ଼ି କାଉକୁ ଏ ପାଖ ସେ ପାଖ କରିବାକୁ ଲାଗିଲା । କିନ୍ତୁ ତଥାପି କାଉ ପିଠିରୁ ଉଠିଲା ନାହିଁ । ଶେଷରେ ମେଣ୍ଢା ବିରକ୍ତ ହୋଇ କହିଲା, "ତୁମେ ଯଦି ଗୋଟିଏ କୁକୁର ସଙ୍ଗେ ଏହିପରି ବ୍ୟବହାର କରିଥାନ୍ତ ତାହାହେଲେ ସେ ତାର ମୁନିଆଁ ଦାନ୍ତ-ଦ୍ୱାରା ତମକୁ ଭଲ କରି ଏହାର ପ୍ରତିଫଳ ଦେଇଥାନ୍ତା ।" କାଉ ହସିହସି କହିଲା, "ମୁଁ ସେପରି ଲୋକ ସଙ୍ଗେ କଦାପି ଲାଗେ ନାହିଁ । ମୁଁ ଦୁର୍ବଳମାନଙ୍କୁ ଘୃଣା

କରେ ଓ ବହୁଆ ଲୋକ ଦେଖିଲେ ନଇଁ କରି ଚଲେ । ଯାହା ସଙ୍ଗେ ବିବାଦ କରିବାକୁ ହେବ ଏ କଥାଟି ମୁଁ ଭଲକରି ଜାଣେ । ଏତକ ଜାଣୁଁ ବୋଲି ତ ଆମ୍ଭେମାନେ ବେଶି ଦିନ ବଞ୍ଚୁଅଛୁଁ ।”

—o—

( ୪୩ )

## ଲୁଣମହାଜନ ଓ ଗଧ ।

ଜଣେ ଲୁଣମହାଜନ ତାର ଗଧଟିକୁ ନେଇ ଲୁଣ କିଣିବାକୁ ସମୁଦ୍ର କୂଳକୁ ଯାଇଥିଲା । ଲୁଣ ନେଇ ଘରକୁ ଫେରିବାବେଳେ ଗୋଟିଏ ନଈକୂଳରେ ଅସ୍ତ ଅସ୍ତ ଦୈବାତ୍ ଗଧର ଗୋଡ଼ ଖସି ଯାଇ ପାଣିରେ ପଡ଼ିଗଲା । ପାଣି ଲାଗି ଲୁଣ ସବୁ ମିଳାଇ ଯିବାରୁ ଗଧକୁ ବଡ଼ ଆଶ୍ୱାସ ଲାଗିଲା । ମହାଜନ ଫେରି ଯାଇ ବସ୍ତାରେ ପୂର୍ବ ଅପେକ୍ଷା ଅନ୍ଧୁର ବେଶୀ ଲୁଣ ଭର୍ତ୍ତି କରି ଆଣିଲା । ପୁଣି ଯେତେବେଳେ ସେମାନେ ସେହି ନଈକୂଳକୁ ଆସିଲେ ଗଧ ଜାଣି ଶୁଣି ପାଣିରେ ପଡ଼ିଗଲା । ବୋଝ ଅନେକ ପରିମାଣରେ କମିଯିବାରୁ ଗଧ ଆନନ୍ଦରେ ଗର୍ଜ୍ଜନ କରିବାକୁ ଲାଗିଲା ।

ମହାଜନ ଗଧର ଚାଲାକ ବୁଝି ପାରି ତାକୁ ଶିକ୍ଷା ଦେବା ଲାଗି ଏଥର ଲୁଣ ବଦଳରେ ତା’ ଉପରେ ଗୁଡ଼ିଏ ତୁଳା ବୋଝାଇ କଲା । ପୁଣି ମଧ୍ୟ ଗଧ ସେହିପରି ଠକାମି କରି ନଈକୂଳକୁ ଆସି ପାଣିରେ ଖସି ପଡ଼ିଲା । କିନ୍ତୁ ଏଥର ତୁଳା ଭିତରେ ପାଣି ପଶିଗଲା ଓ ଏବଡ଼ ଭାରି ହେଲା ଯେ ଗଧ ଆଉ ଉଠାଇ ପାରିଲା ନାହିଁ । ନିଜ ଚାଲାକରେ ନିଜେ ଠକି ଗଧ ମନରେ ବଡ଼ କଷ୍ଟ ହେଲା ।



( ୪୪ )

## ଜଣେ ଲୋକ ଓ ତାର ଦୁଇ ସ୍ତ୍ରୀ ।



ଜଣେ ଦରବୁଢ଼ା ଲୋକର ଦୁଇଟି ସ୍ତ୍ରୀ ଥିଲେ । ସେଥି ମଧ୍ୟରୁ ଗୋଟିଏ ଯୁବତୀ ଓ ଆଉ ଗୋଟିଏ ବୁଢ଼ୀ । ସେ ଲୋକଟିର ମୁଣ୍ଡରୁ ପ୍ରାୟ ଅଧାଅଧି ବାଳ ପାଚି ଯାଇଥିଲା । ସ୍ୱାମିର ବୟସ ତାହାଠାରୁ କମ୍ ବୋଲି ବୁଢ଼ୀକୁ ବଡ଼ ଲାଜ ମାଡ଼େ । ସେଥିଲାଗି ସେ ଯେତେବେଳେ ପାରେ ସ୍ୱାମୀ ମୁଣ୍ଡରୁ ଗୁଡ଼ିଏ କଳା-ବାଳ ଉପାଡ଼ି ପକାଏ । ଯୁବତୀଟି ମଧ୍ୟ ସେହିପରି ବୁଢ଼ା ସ୍ୱାମିର ସ୍ତ୍ରୀ ବୋଲି ଲଜ୍ଜିତ ହୋଇ ସୁବିଧା ଦେଖି ସ୍ୱାମୀ ମୁଣ୍ଡରୁ ପାଚିଲା ବାଳତକ ଉପାଡ଼ି ଦିଏ । ଲୋକଟି ମୋହବଶତରେ ତାହାଙ୍କୁ କିଛି କହି ପାରେ ନାହିଁ । ଶେଷରେ ଏପରି ହେଲା ଯେ ଉଭୟ ସ୍ତ୍ରୀଙ୍କ ମୋହବଶତରେ ପଡ଼ି ବିଚରା ସ୍ୱାମିଟିର ମୁଣ୍ଡରେ ଆଉ ଗୋଟିଏ ବାଳ ରହିଲା ନାହିଁ ।

ସମସ୍ତଙ୍କର ମନ ରକ୍ଷା କରିବାକୁ ଗଲେ ନିଜର ଅନିଷ୍ଟ ଘଟେ ।

—o—

( ୪୫ )

## ସିଂହ ଓ ବରାହ ।



ଗ୍ରୀଷ୍ମକାଳରେ ଥରେ ଗୋଟିଏ ସିଂହ ଓ ଗୋଟିଏ ବରାହ ପାଣି ପିଇବା-ଲାଗି ଏକସଙ୍ଗରେ ଆସି ଗୋଟିଏ ଛୋଟ ଗାଡ଼ିଆ ନିକଟରେ ପହଞ୍ଚିଲେ । କିଏ ପ୍ରଥମେ ପାଣି ପିଇବ ଏଥିଲାଗି କଳିଆ ଲାଗୁ ଲାଗୁ ଶେଷରେ ଉଭୟଙ୍କ ମଧ୍ୟରେ ଘୋର ଯୁଦ୍ଧ ହେଲା । ଅନେକ କ୍ଷଣ ଯୁଦ୍ଧ କରି କରି ଯେତେବେଳେ ଦୁହେଁଯାକ କ୍ଳାନ୍ତ ହୋଇ ପଡ଼ିଲେ ସେମାନଙ୍କ ମଧ୍ୟରେ କଥା ହେଲା ଯେ, କିଛିକ୍ଷଣ ବିଶ୍ରାମ କରି ପୁଣି ଯୁଦ୍ଧ କରିବା । ଯୁଦ୍ଧ ବନ୍ଦ କରି ବସିଅଛନ୍ତି ଏପରି

ସମୟରେ ଦେଖିଲେ ଯେ ପଲେ ଶାଗୁଣା ଉପରେ ଝାଙ୍କ କରି ବସିଛନ୍ତି, ସିଂହ ଓ ବାଘ ମଧ୍ୟରୁ ଯେ ଆଗେ ମରିବ ତାକୁ ଖାଇବେ । ଏହା ଦେଖି ସେମାନେ ଭାବିଲେ କାହୁଁ ଶାଗୁଣାଙ୍କ ଆହାର ହେବା ଅପେକ୍ଷା ଏକସଙ୍ଗେ ମିଳି ମିଶି ରହିବା ଶତ ଗୁଣରେ ଭଲ । ଏହା ଭାବି ସେମାନେ କଳିଆ ଭାଙ୍ଗି ଦେଇ ସେହି ଦିନଠାରୁ ବନ୍ଧୁଭାବରେ ଚଳିଲେ ।



( ୪୬ )

## ମୂଷା ଓ ନେଉଳ ।



ମୂଷା ଓ ନେଉଳମାନଙ୍କ ମଧ୍ୟରେ ଅନେକ ଥର ଯୁଦ୍ଧ ହେଲା । କିନ୍ତୁ ସବୁଥର ମୂଷାମାନେ ହାରିଗଲେ । ମୂଷାମାନେ ବିଚାରିଲେ, ଆମ୍ଭମାନଙ୍କୁ ଚଳାଇବାକୁ କେହି ସର୍ଦ୍ଦାର ନ ଥିବାରୁ ଆମ୍ଭମାନଙ୍କ ମଧ୍ୟରେ କିଛି ନିୟମ ରହି ପାରୁ ନାହିଁ । ସେଥିଲାଗି ଆମ୍ଭେମାନେ ବରାବର ହାରି ଯାଉଅଛୁଁ । ଏହା ଭାବି ଯେଉଁମାନଙ୍କର ବୁଦ୍ଧି, ବଳ ଓ ସାହସ ବେଶି ଏହିପରି କେତୋଟି ମୂଷାଙ୍କୁ ବାଛି ସେମାନେ ସର୍ଦ୍ଦାର କରିଦେଲେ । ସର୍ଦ୍ଦାରମାନଙ୍କୁ ଚିହ୍ନା ଯିବ ବୋଲି ସେମାନଙ୍କ ମୁଣ୍ଡରେ ଖଣ୍ଡେ ଖଣ୍ଡେ କୁଟା ଗୁଡ଼ାଇ ଦିଆଗଲା । ଏ ସବୁ ହେଲାରୁ ସର୍ଦ୍ଦାରମାନଙ୍କୁ ଆଗରେ କରି ମୂଷାମାନେ ଯୁଦ୍ଧ କରିବାକୁ ବାହାରିଲେ । ମୂଷାମାନଙ୍କଠାରୁ ନେଉଳମାନଙ୍କର ବଳ ଖୁବ୍ ବେଶି ! ଯୁଦ୍ଧ ହେଲା ମାତ୍ରେ ମୂଷାମାନେ ପ୍ରାଣ ଭୟରେ ଯାଇ ନିଜ ନିଜ ଗାତ ଭିତରେ ପଶିଲେ । କିନ୍ତୁ ବିଚରା ସର୍ଦ୍ଦାରଗୁଡ଼ିକଙ୍କ ମୁଣ୍ଡରେ ପଗଡ଼ି ଥିବାରୁ ସେମାନେ ଗାତରେ ଗଳି ପାରିଲେ ନାହିଁ, ନେଉଳମାନଙ୍କ ହାତରେ ପଡ଼ି ପ୍ରାଣ ହରାଇଲେ ।

ଯେଉଁମାନଙ୍କର ଯେତିକି ମାନ୍ୟ, ସେମାନଙ୍କର ସେତିକି ବିପଦ ।

---

( ୪୭ )

# ଗଧ, କୁକୁଡ଼ା ଓ ସିଂହ ।



ଗୋଟିଏ ଗଧ ଓ ଗୋଟିଏ କୁକୁଡ଼ା ଏକସଙ୍ଗେ ଗୋଟିଏ ଚଷା ଅଗଣାରେ ଥାନ୍ତି । ଦିନେ କେଉଁଠାରୁ ଗୋଟିଏ ସିଂହ ଆସି ସେଠାରେ ପହଞ୍ଚିଲା । ସିଂହକୁ ଦେଖି ଗଧ ଭୟରେ ଥର ଥର ହେବାକୁ ଲାଗିଲା ।

ସିଂହ ଗଧ ଉପରକୁ ଝାମ୍ପ ମାରିବାକୁ ବସିଲାବେଳକୁ କୁକୁଡ଼ା ବଡ଼-ପାଟି କରି ଥରେ ଡାକ ଦେଲା । ପ୍ରବାଦ ଅଛି, କୁକୁଡ଼ା ଡାକ ଶୁଣିଲେ ସିଂହ ବଡ ବିରକ୍ତ ହୁଏ ଓ ସାଙ୍ଗେ ସାଙ୍ଗେ ସେଠାରୁ ପଳାଇଯାଏ । କୁକୁଡ଼ା ଡାକ ଶୁଣି ସିଂହ ଆଉ ସେଠାରେ ନ ରହି ଶୀଘ୍ର ପଳାଇଗଲା । ଏହା ଦେଖି ଗଧ ମନେ ମନେ ବିଚାରିଲା, ସାମାନ୍ୟ ଗୋଟାଏ କୁକୁଡ଼ା ଡାକ ଶୁଣି ଯେତେବେଳେ ସିଂହର ଏତେ ଭୟ ହେଲା, ମୁଁ ତେବେ ଆଉ ତାକୁ ଡରିବି କାହିଁକି ? ଏହା ଭାବି ଗଧ ସିଂହକୁ ଧରିବ ବୋଲି ସାହସ କରି ତା' ପଛେ ପଛେ ଗୋଡ଼ାଇଲା । ଅଳ୍ପ ଦୂର ନ ଯାଉଣୁ ସିଂହ ପଛକୁ ଫେରି ଗଧକୁ ଖଣ୍ଡ ଖଣ୍ଡ କରି ପକାଇଲା ।



( ୪୮ )

# ଗଧିଆ ଓ ସିଂହ ।



ଗୋଟିଏ ଗଧିଆ ଅଢେଇରୁ ଗୋଟିଏ ମେଣ୍ଢାଛୁଆ ଧରିଆଣି ନିଜ ଗୁହାକୁ ନେଇ ଯାଉଥିଲା । ଗୋଟିଏ ସିଂହ ତାକୁ ବାଟରେ ଦେଖି



ମେଣ୍ଢାଛୁଆଟି ତାହାଠାରୁ ଛଡ଼ାଇ ନେଇଗଲା । ଗଧିଆ ଟିକିଏ ଦୂରରେ ଛିଡ଼ା ହୋଇ ପାଟି କରି କହିଲା "ମୋ ଜିନିଷକୁ ତୁମେ ବଡ଼ ଅନ୍ୟାୟରେ ମୋଠାରୁ ନେଇଗଲ !" ସିଂହ ହସି କରି କହିଲା "ଠିକ କଥା, ଏ ଜିନିଷଟି ନ୍ୟାୟରେ ଏକା ତୁମର ହୋଇଛି ! ନୁହେଁ ? ତୁମର କେହି ବନ୍ଧୁ ତୁମକୁ ଉପହାର ଦେଇଥିଲେ ନା କଣ ?"

ଅନ୍ୟର ଦୋଷ ଯେପରି ଆଖିରେ ପଡ଼େ ନିଜ ଦୋଷ ସେପରି ପଡ଼େ ନାହିଁ ।



( ୪୯ )

# ଗଧିଆ ଓ ମେଣ୍ଢାଛୁଆ ।



ଦିନେ ଗୋଟିଏ ଗଧିଆ ଗୋଟିଏ ମେଣ୍ଢାଛୁଆକୁ ଦେଖି ମନେ କଲା, ମୁଁ ଏହା ଉପରେ ପ୍ରକାଶ୍ୟରେ କିଛି ଅତ୍ୟାଚାର ନ କରି ଏପରି ଗୋଟିଏ ବାହାନା କରିବି, ଯେପରି ମେଣ୍ଢାଛୁଆ ନିଜେ ବୁଝି ପାରିବ ଯେ ତାକୁ ଖାଇବାକୁ ମୋର ଅଧିକାର ଅଛି । ଏହା ଭାବି ସେ ମେଣ୍ଢାଛୁଆକୁ କହିଲା, "ଗତବର୍ଷ ତୁମେ ମୋତେ ବଡ଼ ଅପମାନ ଦେଇଥିଲ ।" ମେଣ୍ଢାଛୁଆ କାତର-ଭାବରେ କହିଲା, "ମୁଁ ତ ସେତେବେଳକୁ ଜନ୍ମ ହୋଇ ନାହିଁ ।" ଗଧିଆ କହିଲା, "ତୁମେ ମୋ ପଡ଼ିଆରୁ ବରାବର ଘାସ ଖାଉଛ ।" ମେଣ୍ଢାଛୁଆ ଉତ୍ତର କଲା, "ମୁଁ ତ ଏ ପର୍ଯ୍ୟନ୍ତ ଘାସ କଣ ଚାଖି ନାହିଁ !" ତହୁଁ ସେ ଗଧିଆ କହିଲା, "ତୁମେ ମୋ ଝରଣାରୁ ପାଣି ପିଉଛ ।" ମେଣ୍ଢାଛୁଆ ଚିତ୍କାର କରି କହିଲା "ମୁଁ ଏପର୍ଯ୍ୟନ୍ତ ମୋଟେ ପାଣି ପିଇ ନାହିଁ । କାରଣ ମାର ଦୁଧ ଏପର୍ଯ୍ୟନ୍ତ ମୋର ଖାଇବା ଓ ପିଇବା ଦୁଇ କାମ ତୁଲାଉଛି !"

ଏ କଥା ଶୁଣି ଗଧିଆ ମେଣ୍ଢାଛୁଆକୁ ଧରି ଆହାର କରିବା ସମୟରେ କହିଲା, "ବାଃ ତୁମେ ମୋର ସବୁ ଯୁକ୍ତି ଫିଟାଇ ଦେବ ବୋଲି ମୁଁ ତ ଆଜି ଉପାସରେ ରହିବି ନାହିଁ !"

ଦୁଷ୍ଟ ଲୋକ କିଛି ନା କିଛି ଗୋଟିଏ ବାହାନା ଧରି ନିଜର ଉଦ୍ଦେଶ୍ୟ ସାଧନ କରେ ।



( ୫୦ )

## ଭାଲୁ ଓ ବିଲୁଆ ।



ଗୋଟିଏ ଭାଲୁ ଦିନେ ଗର୍ବ କରି କହିଲା, "ମୋଠାରୁ ବଳି ଉପକାରୀ ଜନ୍ତୁ ଆଉ କେହି ନାହିଁ । ମନୁଷ୍ୟ ପ୍ରତି ମୋର କି ସୁନ୍ଦର ବ୍ୟବହାର ! ମନୁଷ୍ୟକୁ ମୁଁ ଏତେଦୂର ଭକ୍ତି କରେ ଯେ ତାର ମୃତଦେହକୁ ସୁଦ୍ଧା ସ୍ପର୍ଶ କରେ ନାହିଁ ।" ବିଲୁଆ ଭାଲୁର ଏ କଥା ଶୁଣି ହସି ହସି କହିଲା, "ତୁମେ ଯଦି ଜୀଅନ୍ତା ମନୁଷ୍ୟକୁ ନ ଖାଇ ମଲା ମନୁଷ୍ୟକୁ ଖାଉଥାନ୍ତ ତାହାହେଲେ ଅଧିକ ଭଲ ହୋଇଥାନ୍ତା । ତାହା କରୁଥିଲେ ଉପକାର କାହାରି କିଛି ନ ହେଉ ଅପକାର ହୋଇ ନ ଥାନ୍ତା ।"

— ※ —

( ୫୧ )

## ବୁଢ଼ୀ ଓ ଡାକ୍ତର ।



ଗୋଟିଏ ବୁଢ଼ୀର ଆଖିକି ଆଉ ନ ଦିଶିବାରୁ ସେ ଜଣେ ଡାକ୍ତର ଆଣି ଦେଖାଇଲା । ଡାକ୍ତର ଆଖି ଭଲ କରି ଦେବାକୁ କହିବାରୁ ତା' ସଙ୍ଗେ ଏହି ଚୁକ୍ତି ହେଲା ଯେ ଯଦି ଭଲ କରିଦିଏ ତେବେ ବୁଢ଼ୀ ତାକୁ ଶହେ ଟଙ୍କା ଦେବ; କିନ୍ତୁ ଭଲ ନ କଲେ ଡାକ୍ତର କିଛି ପାଇବ ନାହିଁ । ଏହିପରି ଚୁକ୍ତି ହେଲା ପରେ ଡାକ୍ତର ଥରକୁ ଥର ଆସି ବୁଢ଼ୀ ଆଖିରେ ଗୋଟିଏ ଲେପ ଦେଇଯାଏ ଏବଂ ପ୍ରତିଥର ତା ଘରୁ କିଛି ଜିନିଷ ଚୋରି କରି ନେଇଯାଏ । ବୁଢ଼ୀକୁ କିଛି ଦିଶୁ ନ ଥିବାରୁ ସେ କିଛି ଜାଣି ପାରେ ନାହିଁ । ଏହିପରି କରି ସେ ବୁଢ଼ୀର ସବୁ ସମ୍ପତ୍ତି ନେଇଗଲା ।

ଶେଷରେ ବୁଢ଼ୀର ଅଖି ଭଲ ହୋଇ ଯିବାରୁ ଡାକ୍ତର ତାକୁ ଟଙ୍କା ମାଗିଲା । ବୁଢ଼ୀ ଭଲ ହୋଇ ସାରି ଯେତେବେଳେ ଦେଖିଲା ଯେ ତାର ଘରେ ଆଉ ଜିନିସପତ୍ର କିଛି ନାହିଁ, ସେ ଆଉ ଡାକ୍ତରକୁ କିଛି ଦେଲା ନାହିଁ । ଡାକ୍ତର କିନ୍ତୁ ନିଜର ଦାବି ନ ଛାଡ଼ି ବୁଢ଼ୀ ନାମରେ ନାଲିଶ କଲା । ବୁଢ଼ୀ ଅଦାଲତରେ ଛିଡ଼ା ହୋଇ କହିଲା "ଡାକ୍ତର ଯାହା କହୁଅଛି ସବୁ ସତ୍ୟ; ପ୍ରକୃତରେ ମୁଁ ଭଲ ହେଲେ ତାକୁ ଶହେ ଟଙ୍କା ଦେବି ବୋଲି କହିଥିଲି । ତାହା ସଙ୍ଗେ ଏତିକ ମଧ କହିଥିଲି ଯେ ଭଲ ନ ହେଲେ କିଛି ଦେବି ନାହିଁ । ବର୍ତ୍ତମାନ ସେ କହେ ଯେ ମୁଁ ଭଲ ହୋଇ ଗଲିଣି, କିନ୍ତୁ ମୁଁ କହେ ଯେ ମୁଁ ପୂର୍ବ ପରି ଅନ୍ଧ ଅଛି, କାରଣ ମୁଁ ଯେତେବେଳେ ଅନ୍ଧ ହୋଇ ନ ଥିଲି ସେତେବେଳେ ମୁଁ ମୋ ଘରେ ଅନେକ ଜିନିସପତ୍ର ଦେଖୁଥିଲି, କିନ୍ତୁ ବର୍ତ୍ତମାନ ଗୋଟିଏ କିଛି ଦେଖି ପାରୁ ନାହିଁ । ତେବେ ଆଉ ଭଲ ହେଲି କିପରି ?" ବୁଢ଼ୀର କଥା ଶୁଣି ଅଦାଲତରେ ଗୋଟିଏ କୌତୁକର ଉହାଳି ପଡ଼ିଗଲା ।

---

( ୪୬ )

## କୁକୁର, କୁକୁଡ଼ା ଓ ବିଲୁଆ ।



ଗୋଟିଏ କୁକୁର ଓ ଗୋଟିଏ କୁକୁଡ଼ା ଉଭୟଙ୍କର ବଡ଼ ମନ ମିଳୁଥିଲା । ସେମାନେ ଦିହେଁ ଏକସଙ୍ଗରେ ବୁଲିବାକୁ ଯାଇ ଯାଇ ଏକ ଜଙ୍ଗଲ ମଧ୍ୟରେ ରାତି ହୋଇଗଲା । ରାତିରେ କୁକୁଡ଼ା ଯାଇଁ ଗୋଟିଏ ଗଛ ଉପରେ ରହିଲା ଏବଂ କୁକୁର ସେହି ଗଛ ତଳେ ଶୋଇଲା । ରାତି ପାହିବାରୁ କୁକୁଡ଼ା ନିଜର ସ୍ୱଭାବ ଅନୁସାରେ ଉଚ୍ଚସ୍ୱରରେ ଡାକିବାକୁ ଲାଗିଲା । କୁକୁଡ଼ାର ଡାକ ଶୁଣି ଗୋଟିଏ ବିଲୁଆ ମନେକଲା ଗୋଟିଏ କିଛି କୌଶଳ କରି ଆଜି ଏହି କୁକୁଡ଼ାଟିକୁ

ଖାଇବି । ଏହାପରେ ଭାବି ବିଲୁଆ ସେହି ଗଛ ନିକଟକୁ ଯାଇଁ କୁକୁଡ଼ାକୁ ଡାକି କହିଲା, "ଭାଇ ତୁମଠାରୁ ବଳି ଉପକାରୀ ପକ୍ଷୀ ଆଉ କେହି ନାହାନ୍ତି । ତମ ଗଳାଟି ବଡ଼ ସୁନ୍ଦର, ତମ ଡାକ ଶୁଣି ମୁଁ ତୁମ ସଙ୍ଗେ କଥାବାର୍ତ୍ତା କରିବାକୁ ଆସିଛି, ତେବେ ଗଛରୁ ଓହ୍ଲାଇ ଆସ, ଏଠାରେ ବସି ଆଳାପ କରିବା ।" କୁକୁଡ଼ା ବିଲୁଆର ଚାଲାକି ବୁଝିପାରି ତାକୁ ପ୍ରତିଫଳ ଦେବାଲାଗି କହିଲା, "ଭାଇ, ଗଛ ତଳେ ମୋର ଦରୁଆନ ଶୋଇଛି, ତୁମେ ଯଦି ଦୟା କରି ତାକୁ ଉଠାଇ ଦିଅ ତାହାହେଲେ ସେ ଦରଜା ଖୋଲିଦେଲେ ମୁଁ ତଳକୁ ଯିବି ।" ବିଲୁଆ ଏ କଥା ଶୁଣି ଖୁସି ହୋଇ ଗଛମୂଳକୁ ଗଲାମାତ୍ରେ କୁକୁର ତାକୁ ଧରି ଖଣ୍ଡ ଖଣ୍ଡ କରି ପକାଇଲା ।

ପର ଲାଗି ଯେ ଫାନ୍ଦ ବସାଏ, ସେ ଫାନ୍ଦରେ ସେ ନିଜେ ପଡ଼େ ।

— ❊ —

( ୨୩ )

## ବାଘ ଓ ପୋଷାକୁକୁର ।



ଗୋଟିଏ ମୋଟାସୋଟା କୁକୁର ସଙ୍ଗେ ଦିନେ ଗୋଟିଏ ଦୁର୍ବଳ ବାଘର ଦେଖା ହେଲା । ପ୍ରଥମେ ଟିକିଏ ଆଳାପ ହୋଇଗଲା ପରେ ବାଘ କହିଲା "ତୁମକୁ ଗୋଟିଏ କଥା ପଚାରିବି । ତୁମେ ତ ବଡ଼ ମୋଟାସୋଟା ଦିଶୁଛ ! ତୁମେ କଣ ଆହାର କର ଏବଂ ତୁମ ଆହାର ବା କପରି ମିଳେ ? ମୁଁ ତ ଦିନ ରାତି ଆହାର ଖୋଜି ଖୋଜି ଦିନେ ସୁଦ୍ଧା ପେଟ ପୂରାଇ ଖାଇବାକୁ ପାଏ ନାହିଁ । କେବେ କେବେ ଉପାସରେ ମଧ୍ୟ ରହିବାକୁ ପଡ଼େ । ସେଥିଲାଗି ଦେଖୁଛ ମୁଁ କପରି ଦୁର୍ବଳ ହୋଇ ପଡ଼ିଛି !"

କୁକୁର କହିଲା, "ତୁମେ ଯଦି ମୋ ପରି କରନ୍ତ ତେବେ ତୁମର ଆଉ ଆହାରର ଅଭାବ ହୁଅନ୍ତା ନାହିଁ।" ବାଘ କହିଲା ତୁମକୁ କଣ କରିବାକୁ ହୁଏ ? କୁକୁର କହିଲା, "କିଛି ନୁହେ ! କେବଳ ରାତିରେ ଖାଉନ୍ଦର ଘରଟା ଜଗିବାକୁ ପଡ଼େ।" ବାଘ କହିଲା, ମୁଁ ଏତକ କରିବାକୁ ରାଜି ଅଛି । ଖରା ବର୍ଷାରେ ରାତି ଦିନ ବୁଲି ବୁଲି ମୋର ବଡ଼ କଷ୍ଟ ହେଉଅଛି । ମୁଁ ଆଉ ଏ ସବୁ ସହି ପାରିବି ନାହିଁ । ବାଘର ଦୁଃଖ କଥା ଶୁଣି କୁକୁର କହିଲା, "ତୁମେ ତେବେ ମୋ ସାଙ୍ଗରେ ଅସ । ମୁଁ ଖାଉନ୍ଦଙ୍କୁ କହି ସବୁ ବନ୍ଦୋବସ୍ତ କରି ଦେବି।" ବାଘ କୁକୁର ସାଙ୍ଗରେ ଚାଲିବାକୁ ଲାଗିଲା ।

ଖଣ୍ଡେ ଦୂର ଯାଇ ବାଘ କୁକୁର ବେକରେ ଗୋଟିଏ ଦାଗ ଦେଖି ପଚାରିଲା, "ଭାଇ, ତୁମ ବେକରେ ଏଇଟା କି ଦାଗ ?" କୁକୁର କହିଲା, "ସେଇଟା କିଛି ନୁହେ ବୋଧହୁଏ ଶିକୁଳିର ଦାଗ ।" ବାଘ କହିଲା, "ଶିକୁଳି ଦିଆଯାଏ କାହିଁକି ?" କୁକୁର କହିଲା, "ମତେ ଦିନବେଳେ ବାନ୍ଧି ରଖନ୍ତି ଓ ରାତିରେ ଛାଡ଼ି ଦିଅନ୍ତି, ସେତେବେଳକୁ ଯେଉଁ ଆଡ଼େ ଇଚ୍ଛା ସେଆଡ଼େ ମୁଁ ଯାଇ ପାରେ । ଏହା ଛଡ଼ା ଚାକରମାନେ ମତେ କେଡ଼େ ଆଦର କରି ଅଇଁସା ଅଇଁସି ଭାତ ଭଲ ଖାଇବାକୁ ଦିଅନ୍ତି, ଗାଧୋଇ ଦିଅନ୍ତି । ଖାଉନ୍ଦ ମଧ୍ୟ ମତେ ବଡ଼ ଆଦର କରି ଅଇଁସା ଅଇଁସି କରେ । ଦେଖିଲ, ମୁଁ କିପରି ସୁଖରେ ଅଛି !"

ବାଘ କହିଲା, "ଭାଇ ତମ ସୁଖ ତମ ପାଖରେ ଥାଉ, ମୁଁ ଏପରି ସୁଖ ଲୋଡ଼େ ନାହିଁ । ପରାଧୀନ ହୋଇ ରାଜଭୋଗ ପାଇବା ଅପେକ୍ଷା ସ୍ୱାଧୀନ ହୋଇ ଅହାରି କଷ୍ଟ ଭୋଗ କରିବା ଲକ୍ଷେ ଗୁଣରେ ଭଲ ।" ଏହା କହି ବାଘ ଚାଲିଗଲା ।



( ୫୪ )

## ମେଣ୍ଢାଜଗୁଆଳ ଓ ଗଧିଆ ।

---

ଦିନେ ଗୋଟିଏ ମେଣ୍ଢାଜଗୁଆଳ ଗୋଟିଏ ମେଣ୍ଢା ମାରି ଓ ତାକୁ ରାନ୍ଧି ବନ୍ଧୁବାନ୍ଧବମାନଙ୍କ ସଙ୍ଗରେ ବସି ଆନନ୍ଦରେ ଆହାର କରୁଥିଲା । ଏପରି ସମୟରେ ଗୋଟିଏ ଗଧିଆ ସେହି ବାଟ ଦେଇ ଚାଲି ଯାଉ ଯାଉ ଏ ସବୁ ଦେଖି କହିଲା, "ଭାଇ ତମେମାନେ ତ ମେଣ୍ଢାଟିକୁ ମାରି ବଡ଼ ଆନନ୍ଦରେ ବସି ଖାଉଛ ; ଯଦି ମତେ ତୁମେମାନେ ଏହିପରି ମେଣ୍ଢାମାଂସ ଖାଇବାର ଦେଖିଥାନ୍ତ, ତାହାହେଲେ ତୁମେମାନେ ଯେ କି ତୁମୂଳ କାଣ୍ଡ କରିଥାନ୍ତ ତାର ଠିକଣା ନାହିଁ ।"

ଅନ୍ୟମାନେ ଯେଉଁ କାର୍ଯ୍ୟ କଲେ ଲୋକେ ଗାଳି ଦିଅନ୍ତି, ନିଜେ ସେ କାର୍ଯ୍ୟ କଲାବେଳେ ଆଉ ତାକୁ ଦୋଷ ବୋଲି ମନେ କରନ୍ତି ନାହିଁ ।

---

( ୫୫ )

## କାଠୁରିଆ ଓ ଯମ ।

ଗୋଟିଏ ବୁଢ଼ା ପ୍ରତିଦିନ ଜଙ୍ଗଲରୁ କାଠ ଆଣି ଓ ତାକୁ ବିକି ଅତି କଷ୍ଟରେ କାଳ କଟାଏ । ଦିନେ ଖରାଦିନ ଦିପହରଆବେଳେ ସେ ଗୋଟିଏ ଶକ୍ତ କାଠ ବୋଝ ମୁଣ୍ଡାଇ ବଣରୁ ଫେରୁଥିଲା । ଭୋକରେ ପେଟ ଜଳି ଯାଉଛି, ଶୋଷରେ ତଣ୍ଟି ଶୁଖି ଯାଉଛି, ଖରାରେ ଦେହ ମୁଣ୍ଡରୁ ଝାଳ ବୋହି ଯାଉଛି, ତତଲା ବାଲିରେ ଗୋଡ଼ ପୋଡ଼ି ଯାଉଛି, ଏପରି ଅବସ୍ଥାରେ ଅତିଶୟ କ୍ଳାନ୍ତ

ହୋଇ ସେ କାଠ ଗୋଛାଟି ପକାଇ ଦେଇ ଗୋଟିଏ ଗଛ ମୂଳରେ ବସି ପଡ଼ିଲା । ବସି ବସି ଭାବିଲା "ଏପରି କଷ୍ଟଭୋଗ କରିବା ଅପେକ୍ଷା ମରଣ ଶତଗୁଣରେ ଭଲ । ଏତେ ଲୋକଙ୍କୁ ଆସି ଯମ ନେଉଛି ମତେ କେଉଁ ନାହିଁ କାହିଁକି ? ମରିଗଲେ ଏ ସବୁ ଦୁଃଖ କଷ୍ଟରୁ ରକ୍ଷା ମିଳନ୍ତା," ଏହିପରି ଦୁଃଖ କରି ସେ ଯମକୁ ଡାକିବାକୁ ଲାଗିଲା । କହିଲା, "ଯମ, ତୁ ଆସି ମତେ ଶୀଘ୍ର ନେଇଯା । ଏପରି କଷ୍ଟରେ ମୋର ଦଣ୍ଡେ ବଞ୍ଚିବାକୁ ଇଚ୍ଛା ନାହିଁ ।"

ତାହାର କଥା ଶେଷ ନ ହେଉଣୁ ଯମ ଆସି ତା' ନିକଟରେ ଛିଡ଼ା ହେଲା । ଯମର ବିକଟାଳ ମୂର୍ତ୍ତି ଦେଖି ଭୟ ପାଇ ବୁଢ଼ା କହିଲା, "ଆପଣ କିଏ, ଏଠାକୁ ବା କାହିଁକି ଆସିଲେ ?" ଯମ କହିଲା, "ମୁଁ ଯମ, ତୁମେ ମତେ ଡାକୁଥିଲ, ମୁଁ ସେଥିଲାଗି ଆସିଛି । ବର୍ତ୍ତମାନ କଣ କରିବି କହ ।" ବୁଢ଼ା କହିଲା, "ଯଦି ଆସିଛ ଦୟା କରି ଏ କାଠଗୋଛାଟି ମୋ ମୁଣ୍ଡକୁ ଦିଅ, ତାହାହେଲେ ମୋର ବଡ଼ ଉପକାର ହେବ ।" ଯମ ବୁଢ଼ା କଥା ଶୁଣି ଟିକିଏ ହସି ସେଠାରୁ ଚାଲିଗଲା ।



( ୫୭ )

## ବେଙ୍ଗମାନଙ୍କର ରଜା ଲାଗି ପ୍ରାର୍ଥନା ।

ବେଙ୍ଗମାନେ ଦନେ ବଡ଼ ଦୁଃଖିତ ହୋଇ ମନେ କଲେ, ସମସ୍ତଙ୍କର



ଜଣେ ଜଣେ ରଜା ଅଛନ୍ତି, ଆମ୍ଭମାନଙ୍କର କେହି ନାହିଁ । ଏହିପରି ଭାବି ଗୋଟିଏ ରଜା ମାଗିବା ପାଇଁ ସେମାନେ ଇନ୍ଦ୍ରଙ୍କ ନିକଟକୁ ଜଣେ ଦୂତ ପଠାଇଲେ । ଇନ୍ଦ୍ର ସେମାନଙ୍କର ସରଳତା ଦେଖି ରଜା ବୋଲି ପୋଖରୀରେ ଖଣ୍ଡେ ବଡ଼ କାଠ ପକାଇ ଦେଲେ । କାଠଖଣ୍ଡ ଏପରି ଶବ୍ଦରେ ପଡ଼ିଲା ଯେ ବେଙ୍ଗମାନେ ଭୟ ପାଇ ପୋଖରୀ ଭିତରେ ଯାଇ ଲୁଚିଗଲେ । କିନ୍ତୁ ଯେତେ-ବେଳେ ସେମାନେ ଦେଖିଲେ ଯେ କାଠଖଣ୍ଡ ଖାଲି ସ୍ଥିର ହୋଇ ପଡ଼ି ରହିଅଛି, କାହାରିକୁ କିଛି କହୁ ନାହିଁ, ସେମାନେ ଭୟ ଛାଡ଼ି କ୍ରମେ ଉପରକୁ ବାହାରିଲେ ଏବଂ ଶେଷରେ ଏପରି ହେଲା ଯେ ସେମାନେ ସେହି କାଠ ଉପରେ ଚଢ଼ି ନାଚ କୁଦା କରିବାକୁ ଲାଗିଲେ ।

କିଛି ସମୟ ପରେ ସେମାନେ ମନେ କଲେ ଏପରି ଗୋଟିଏ ନିର୍ଜୀବ ରଜା ଦେଇ ଇନ୍ଦ୍ର ଆମ୍ଭମାନଙ୍କ ପ୍ରତି ଅନ୍ୟାୟ କରିଅଛନ୍ତି । ଏହିପରି ଭାବି ସେମାନେ ଇନ୍ଦ୍ରଙ୍କ ନିକଟକୁ ପୁଣି ଗୋଟିଏ ଦୂତ ପଠାଇ ପ୍ରାର୍ଥନା କଲେ ଯେ ଆମ୍ଭମାନଙ୍କୁ ଆଉ ଗୋଟିଏ ରଜା ଦିଆଯାଉ ।

ସେମାନଙ୍କୁ ଶାସନ କରିବା ଲାଗି ଇନ୍ଦ୍ର ଏଥର ଗୋଟିଏ ଭଲ ମାଛ ପଠାଇ ଦେଲେ । ବେଙ୍ଗମାନେ ଯେତେବେଳେ ମାଛର ସରଳ ସହଜ ପ୍ରକୃତି ଦେଖି ପାରିଲେ, ସେମାନେ ପୁଣି ଆଉ ଗୋଟିଏ ରଜାପାଇଁ ପ୍ରାର୍ଥନା କଲେ ।

ଇନ୍ଦ୍ର ସେମାନଙ୍କର ଏହି ଅପତ୍ତିରେ ବିରକ୍ତ ହୋଇ ଶେଷରେ ଗୋଟିଏ ବଗ ପଠାଇ ଦେଲେ । ବଗ କ୍ରମେ ସେମାନଙ୍କୁ ଗୋଟି ଗୋଟି କରି ଖାଇବାକୁ ଲାଗିଲା ଏବଂ ଶେଷରେ ପୋଖରୀରେ ଆଉ ଗୋଟିଏ ମାତ୍ର ବେଙ୍ଗ ବାକି ରହିଲେ ନାହିଁ ।



( ୪୭ )

## ଶିକାରୀ ଓ କେଉଟ ।

ଜଣେ ଶିକାରୀ ଜଙ୍ଗଲରୁ ଶିକାର କରି ଫେରି ଆସିବା ସମୟରେ ଘଟଣାକ୍ରମେ ବାଟରେ ତାରଜଣେ କେଉଟ ସଙ୍ଗରେ ଦେଖା ହେଲା । କେଉଟ ମଧ୍ୟ ମାଛ ଧରି ଫେରୁଥିଲା । ଶିକାରୀର ମାଛତକ ନେବାକୁ ଇଚ୍ଛା ହେଲା ଏବଂ କେଉଟର ମଧ୍ୟ ଶିକାର ପାଇବା ଲାଗି ବଡ଼ ଲୋଭ ହେଲା । ସେମାନଙ୍କ ମଧ୍ୟରେ ଶୀଘ୍ର ଗୋଟିଏ ଚୁକ୍ତି ହେଲା ଯେ ଏ ତାର ମାଛତକ ନେବ ଓ ସେ ଯାର ମାଂସତକ ପାଇବ । ଏହିପରି କରିବାରେ ସେମାନଙ୍କ ମନରେ ଏପରି ଆନନ୍ଦ ହେଲା ଯେ ସେମାନେ ପ୍ରତିଦିନ ସେହିପରି ଅଦଳ ବଦଳ କରିବାକୁ ଲାଗିଲେ । ଦିନେ ଜଣେ ପଡ଼ୋଶୀ ସେମାନଙ୍କୁ କହିଲା, "ତୁମେମାନେ ଯଦି ଏହିପରି ବରାବର କର ତାହାହେଲେ ତମର ଅଦଳ ବଦଳ କରିବାର ଗୋଟାଏ ଆନନ୍ଦ ରହିବ ନାହିଁ ଏବଂ ଶେଷରେ ତେମେମାନେ ପୁଣି ନିଜ ନିଜର ଶିକାର ରଖିବାଲାଗି ଇଚ୍ଛା କରିବ ।"

ନିବୃତ୍ତି ଦ୍ୱାରା ଉପଭୋଗ ବୃଦ୍ଧି ପାଏ ।

—※—

( ୪୮ )

## ଠେକୁଆ ଓ କଇଁଛ ।

ଦିନେ ଗୋଟିଏ ଠେକୁଆ ଗୋଟିଏ କଇଁଛର ମଠ ଚାଲି ଦେଖି ତାକୁ ଅନେକ ଥଟ୍ଟା ପରିହାସ କଲା । କଇଁଛ ଟିକିଏ ହସି କରି କହିଲା, "ତେବେ ଜଙ୍ଗଲ ଚାଲି ସତ ଜନ୍ତୁ ବାଜିମାରି ଦୌଡ଼ିଲେ ମୁଁ ତମକୁ ହଟାଇ ଦେବି ଏହି କଥାରେ ଫଳ କଣ ? ଚାଲ ଦୁହେଁଯାକ ଏକସଙ୍ଗରେ ଚାଲିବା, ଦେଖାଯାଉ

କଏ ଅଗ ପହଞ୍ଚିବ ।" ଠେକୁଅ କଇଁଛ କଥାରେ ରାଜି ହେଲା । ଉଭୟେ ବାଲୁଅକୁ ଭଲଲୋକ କରି ଦୌଡ଼ିବା ବାଟ ଓ ସ୍ଥାନ ସ୍ଥିର କଲେ ଏବଂ ଏକ ସମୟରେ ଦୁହେଁଯାକ ଚାଲିବାକୁ ଆରମ୍ଭ କଲେ ।

କଇଁଛ ବଡ଼ ଧୀରେ ଧୀରେ ଚାଲେ, ଏଥିଲାଗି ସେ ଥରେ ସୁଦ୍ଧା ନ ଅଟକି ବରାବର ଚାଲିବାକୁ ଲାଗିଲା । ଠେକୁଅ ଖୁବ୍ ଚଞ୍ଚଳ ଚାଲେ ବୋଲି ଭାବିଲା, ମୋର ଏତେ ତରତର ହେବାର ଦରକାର କଣ ? କଇଁଛ ଯେତେ ଚାଲୁ ପଛକେ ମୁଁ ଏକାଦୌଡ଼କେ ଯାଇଁ ଅଗ ପହଞ୍ଚିବି । ଏହାପରି ଭାବି ସେ ଖଣ୍ଡେ ଦୂର ଯାଇଁ ଗୋଟିଏ ଗଛମୂଳରେ ବିଶ୍ରାମ କରୁ କରୁ ଶୋଇ ପଡ଼ିଲା । ତାର ଯେତେବେଳେ ନିଦ ଭାଙ୍ଗିଲା ସେ ଲକ୍ଷ୍ୟସ୍ଥାନକୁ ଯାଇଁ ଦେଖିଲା ଯେ କଇଁଛ ଅନେକ ପୂର୍ବରୁ ପହଞ୍ଚି ଅଛି ନିଶ୍ଚିନ୍ତରେ ଶୋଇଛି ।

ଧୀରପାଣି ପଥର କାଟେ ।

—୪୩୪—

( ୫୯ )

## ମନୁଷ୍ୟ ଓ ସିଂହ ।

ଦିନେ ଜଙ୍ଗଲ ମଧ୍ୟରେ ଜଣେ ମନୁଷ୍ୟ ଓ ଗୋଟିଏ ସିଂହର ଦେଖା ହେଲା । ଅନ୍ୟ କଥା ହେଉ ହେଉ ଉଭୟଙ୍କ ମଧ୍ୟରେ ବଳ ଓ ସାହସରେ କିଏ ବଡ଼ ଏଥିଲାଗି ଅନେକ ତର୍କ ହେଲା । ମନୁଷ୍ୟ କହେ ମୁଁ ବଡ଼, ସିଂହ କହେ ମୁଁ ବଡ଼ । ଏପରି ବିବାଦ କରି ଯାଉ ଯାଉ ସେମାନେ ବାଟରେ ଗୋଟିଏ ପଥରର ମୂର୍ତ୍ତି ଦେଖି ପାଇଲେ । ସେ ମୂର୍ତ୍ତିରେ ଜଣେ ମନୁଷ୍ୟ ଗୋଟିଏ ସିଂହର ତଣ୍ଟି ଚିପି ମାରି ପକାଉଥିବାର ଛବି ଖୋଳା ହୋଇଅଛି । ଏହା ଦେଖି ମନୁଷ୍ୟ କହିଲା, "କିଏ କାହାଠାରୁ ବେଶି ବଳବାନ୍ ଏହି ଛବିରେ ତାହା ଲେଖା ହୋଇଅଛି ।

ଦେଖ ମନୁଷ୍ୟର ବଳ ବେଶି ବୋଲି ସେ ସିଂହକୁ ଦଳାଇ ଦେଉଅଛି ।" ଏହା ଶୁଣି ସିଂହ କହିଲା, "ଏ ଛବିଟି ତମ ମନୁଷ୍ୟ ମଧ୍ୟରୁ ଜଣେ ଖୋଳିଛି ବୋଲି ଏପରି ହୋଇଅଛି । ସିଂହମାନେ ଯଦି ଛବି ତିଆରି କରି ପାରୁଥାନ୍ତେ ତାହାହେଲେ ଦେଖିଥାନ୍ତ ଯେ ମନୁଷ୍ୟ ସିଂହର ଗୋଡ଼ତଳେ ପଡ଼ି ଛଟପଟ ହେଉଥାନ୍ତା ।"



( ୬୦ )

## ଗଧ ଓ ତାର ଛାଇ ।



ଜଣେ ଲୋକ ଦୂରଦେଶକୁ ବୁଲି ଯିବା ଲାଗି ଗୋଟିଏ ଗଧ ଭଡ଼ା କଲା । ଖୁବ୍ ଟାଣ ଖରା ହୋଇ ବେଶୀ ଗରମ ହେବାରୁ ସେ ବିଶ୍ରାମ କରିବା ଲାଗି ଏକସ୍ଥାନରେ ତାହା ଗଧର-ଛାଇତଳେ ଯାଇଁ ବସିଲା । ଗଧର ଛାଇ କେବଳ ଜଣେ ଲୋକକୁ ଆଶ୍ରୟ ଦେଇ ପାରେ । ଏଥିଲାଗି ଗଧର ମାଲିକ ଓ ପଥିକ ମଧ୍ୟରେ ଭାରି କଳି ଲାଗିଲା । ମାଲିକ କହିଲା, ମୁଁ ତତେ କେବଳ ଖାଲି ଗଧଟି ଭଡ଼ା ଦେଇଛି । ତାର ଛାଇ ଭଡ଼ା ଦେଇ ନାହିଁ । ପଥିକ କହିଲା, ମୁଁ ଗଧଟି ଭଡ଼ା କରିବା ସଙ୍ଗେ ସଙ୍ଗେ ତାର ଛାଇ ମଧ୍ୟ ଭଡ଼ା ନେଇଛି । ଏହିପରି କଳି କ୍ରମେ ଗାଳିରୁ ମାଡ଼ପିଟରେ ପହଞ୍ଚିଲା । ଉଭୟଙ୍କର ଏପରି ମାଡ଼ପିଟ ହେଉଥିବା ସମୟରେ ଗଧଟି ତିଆଁ ମାରି ପଳାଇଗଲା ।

ଅନେକ ସମୟରେ ଆମ୍ଭେମାନେ ଛାଇ ଲାଗି କଳି କରୁ କରୁ ମୂଳ ହରାଇ ବସୁଁ ।



(୭୨)

# କଇଁଛ ଓ ଈଗଲ ପକ୍ଷୀ ।

ଗୋଟିଏ କଇଁଛ ଦିନେ ଖରା ପୋଉଁ ପୋଉଁ ପକ୍ଷିମାନଙ୍କ ନିକଟରେ ଦୁଃଖ କରି କହିଲା, ମୋର ଉଡ଼ିବାକୁ ବଡ଼ ଇଚ୍ଛା ହେଉଛି; କିନ୍ତୁ ମତେ କେହି ଟିକିଏ ଉଡ଼ିବାକୁ ଶିଖାଇ ଦେଲେ ନାହିଁ । ଥରେ ମତେ କେହି ଆକାଶକୁ ଉଠାଇ ଦେଲେ ମୁଁ ତୁମମାନଙ୍କ ପରି ସ୍ୱଚ୍ଛନ୍ଦରେ ଉଡ଼ି ବୁଲନ୍ତି । ଗୋଟିଏ ଈଗଲପକ୍ଷୀ କଇଁଛର ଏ କଥା ଶୁଣି କହିଲା, "ଅରେ ନିର୍ବୋଧ, ତୁ ଭୂଇଁରେ ଚାଲିବା ଜନ୍ତୁ, ତୁ ଆକାଶରେ ଉଡ଼ିବୁ କିପରି ? ତୋ ପକ୍ଷରେ ଉଡ଼ିବା ଅସମ୍ଭବ; ତୁ ଏପରି ବୃଥା ଆଶା କାହିଁକି କରୁଛୁ । ମୁଁ ଯଦି ତତେ ଉପରକୁ ଉଠାଇ ଦିଏଁ ତାହାହେଲେ ଫଳ ହେବ ଏହି ଯେ, ତୁ ଅକାରଣେ ତଳେ ପଡ଼ି ମରିଯିବୁ ।" କଇଁଛ କିନ୍ତୁ ଏ ସବୁ କଥା ନ ମାନି କହିଲା, "ଭାଇ, ତୁମେ ଯଦି ଦୟା କରି ଥରେ ମତେ ଉପରକୁ ଉଠାଇ ଦିଅ, ତାହାହେଲେ ସମୁଦ୍ରରେ ଯେତେ ମଣିମୁକ୍ତା ଅଛି ସେ ସବୁ ମୁଁ ତମକୁ ଦେବି । ତେଣିକି ମୁଁ ଉଡ଼ି ପାରେ ତ ଉଡ଼ିବି, ନ ଉଡ଼ି ପାରିଲେ ପଡ଼ି ମରିବି । ତମର ସେ ଭାବନା କରିବା ଆବଶ୍ୟକ ନାହିଁ ।"

ଏହିପରି ବେଶି ଜିଦ କରିବାରୁ ଈଗଲପକ୍ଷୀ ଟିକିଏ ହସି କଇଁଛକୁ ଧରି ଉପରକୁ ଉଠିଲା । ଅନେକ ଉପରକୁ ଯାଇ ଶେଷରେ "ତେବେ-ତେବେ ଏଣିକି ଉଡ଼" ଏହା କହି ତାକୁ-ଛାଡ଼ି ଦେଲା । ଛାଡ଼ିଦେବା ମାତ୍ରେ ବିଶ୍ରୀ କଇଁଛଟି ଗୋଟିଏ ପାହାଡ଼ ଉପରେ ପଡ଼ି ଚୂନା ହୋଇଗଲା । ମରିବା ସମୟରେ କଇଁଛ ଭାବିଲା, "ମତେ ଉପଯୁକ୍ତ ଶାସ୍ତି ହୋଇଛି । ଭୂଇଁରେ ଟିକିଏ ଚାଲିବା ଯାହା ପକ୍ଷରେ କଷ୍ଟକର ତାର ଆକାଶରେ ଉଡ଼ିବାକୁ ଚେଷ୍ଟା କରିବା କି ଆବଶ୍ୟକ ଥିଲା ? ମୁଁ ବାମନ ହୋଇ ଚନ୍ଦ୍ରକୁ କାହିଁକି ହାତ ବଢ଼ାଇବାକୁ ଗଲି ?"

ମନୁଷ୍ୟ ଯାହା ଚାହେଁ ସବୁ ଯଦି ସେ ପାଉଥାନ୍ତା, ତାହାହେଲେ ତା'ର ଦୁର୍ଦ୍ଦଶାର ଅନ୍ତ ସୀମା ରହନ୍ତ ନ ଥାନ୍ତା ।

( ୬୨ )

## କାଉ ଓ ମୟୂରପୁଚ୍ଛ ।



ଗୋଟିଏ କାଉ ଦେଖିଲା ଯେ ଏକ ସ୍ଥାନରେ କେତେଗୁଡ଼ିଏ ମୟୂରପୁଚ୍ଛ ପଡ଼ିଅଛି । ସେ ମନେ କଲା, ଯଦି ମୁଁ ଏହି ପୁଚ୍ଛଗୁଡ଼ିକ ମୋ ପକ୍ଷୀରେ ଖୋସି-ଦିଏଁ ତାହାହେଲେ ମୁଁ ମୟୂରପରି ବଡ଼ ସୁନ୍ଦର ଦିଶିବି । ଏହା ଭାବି ସେ ମୟୂରପୁଚ୍ଛଗୁଡ଼ିକ ଆପଣା ପକ୍ଷୀରେ ଲଗାଇଦେଲା ଏବଂ କାଉମାନଙ୍କ ନିକଟକୁ ଯାଇ କହିଲା, ତୁମେମାନେ ବଡ଼ ନୀଚ ଓ ଅସୁନ୍ଦର । ମୁଁ ଆଉ ତୁମମାନଙ୍କ ସଙ୍ଗେ ରହିବି ନାହିଁ । ଏହିପରି କହି ସେ ମୟୂରମାନଙ୍କ ସଙ୍ଗେ ମିଶିବାକୁ ଗଲା ।



ମୟୂରମାନେ ଦେଖିଲାମାତ୍ରେ ତାକୁ କାଉ ବୋଲି ଚିହ୍ନି ପାରି ତାହାଠାରୁ ପ୍ରତ୍ୟେକେ ଗୋଟିଏ ଗୋଟିଏ କରି ମୟୂରପୁଚ୍ଛତକ ସବୁ କାଢ଼ି ନେଲେ ଓ ତାକୁ ନିତାନ୍ତ ନିର୍ବୋଧ ମନେ କରି ଏପରି ଭାବରେ କାମୁଡ଼ିବାକୁ ଲାଗିଲେ ଯେ, ସେ ବିଚାରା ଅସ୍ଥିର ହୋଇ ସେଠାରୁ ପଳାଇ ଆସିଲା । ହତାଶ ହୋଇ ଶେଷରେ ସେ ନିଜ ଦଳରେ ମିଶିବାକୁ ଗଲା । ତାକୁ ଦେଖି କାଉମାନେ ନାନା ଥଟ୍ଟା ପରିହାସ କରି କହିଲେ, "ତୋଠାରୁ ବଳି ନିର୍ବୋଧ ଆଉ କେହି ନାହିଁ । ଯେତେବେଳେ ଦେହରେ ଦିଟା ମୟୂରପୁଚ୍ଛ ଖୋସିଦେଇ ତୁ ଗର୍ବରେ ଆମ୍ଭମାନଙ୍କୁ ଛାଡ଼ି ଚାଲି ଯାଇଥିଲୁ, ବର୍ତ୍ତମାନ ପୁଣି କେଉଁ ନିର୍ଲଜ୍ଜ ମୁହଁରେ ଏଠାକୁ ଆସିଛୁ ? ଏପରି ଅବିଶ୍ୱାସୀ ଲୋକଙ୍କୁ ଆମ୍ଭେମାନେ ଆଉ ଦଳରେ ରଖିବାକୁ ଇଚ୍ଛୁ ନାହିଁ ।" ଏହିପରି ନାନା ଗାଳି ଦେଇ ସେମାନେ ତାହାକୁ ତଡ଼ି ଦେଲେ ।

ଯେ ଯେଉଁ ଅବସ୍ଥାର ଲୋକ ସେ ଯଦି ସେହି ଅନୁସାରେ ନ ଚଳେ ତାହାହେଲେ ତାକୁ ପଦେ ପଦେ ଅପଦସ୍ଥ ହେବାକୁ ପଡ଼େ ।

## ( ୬୨ )

# କଇଁଛ ଓ ଈଗଲ ପକ୍ଷୀ ।

ଗୋଟିଏ କଇଁଛ ଦିନେ ଖରା ପୋଉଁ ପୋଉଁ ପକ୍ଷିମାନଙ୍କ ନିକଟରେ ଦୁଃଖ କରି କହିଲା, ମୋର ଉଡ଼ିବାକୁ ବଡ଼ ଇଚ୍ଛା ହେଉଅଛି; କିନ୍ତୁ ମତେ କେହି ଟିକିଏ ଉଡ଼ିବାକୁ ଶିଖାଇ ଦେଲେ ନାହିଁ । ଥରେ ମତେ କେହି ଆକାଶକୁ ଉଠାଇ ଦେବେ ମୁଁ ତୁମମାନଙ୍କ ପରି ସ୍ୱଚ୍ଛନ୍ଦରେ ଉଡ଼ି ବୁଲନ୍ତି । ଗୋଟିଏ ଈଗଲପକ୍ଷୀ କଇଁଛର ଏ କଥା ଶୁଣି କହିଲା, "ଆରେ ନିର୍ବୋଧ, ତୁ ଭୂଇଁରେ ଚାଲିବା ଜନ୍ତୁ, ତୁ ଆକାଶରେ ଉଡ଼ିବୁ କିପରି ? ତୋ ପକ୍ଷରେ ଉଡ଼ିବା ଅସମ୍ଭବ; ତୁ ଏପରି ବୃଥା ଆଶା କାହିଁକି କରୁଛୁ । ମୁଁ ଯଦି ତତେ ଉପରକୁ ଉଠାଇ ଦିଏଁ ତାହାହେଲେ ଫଳ ହେବ ଏହି ଯେ, ତୁ ଅକାରଣେ ତଳେ ପଡ଼ି ମରିଯିବୁ ।" କଇଁଛ କିନ୍ତୁ ଏ ସବୁ କଥା ନ ମାନି କହିଲା, "ଭାଇ, ତୁମେ ଯଦି ଦୟା କରି ଥରେ ମତେ ଉପରକୁ ଉଠାଇ ଦିଅ, ତାହାହେଲେ ସମୁଦ୍ରରେ ଯେତେ ମଣିମୁକ୍ତା ଅଛି ସେ ସବୁ ମୁଁ ତମକୁ ଦେବି । ତେଣିକି ମୁଁ ଉଡ଼ି ପାରେ ତ ଉଡ଼ିବି, ନ ଉଡ଼ି ପାରିଲେ ପଡ଼ି ମରିବି । ତମର ସେ ଭାବନା କରିବା ଆବଶ୍ୟକ ନାହିଁ ।"

ଏହିପରି ବେଶି ଜିଦ କରିବାରୁ ଈଗଲପକ୍ଷୀ ଟିକିଏ ହସି କଇଁଛକୁ ଧରି ଉପରକୁ ଉଠିଲା । ଅନେକ ଉପରକୁ ଯାଇ ଶେଷରେ "ତେବେ ତେବେ ଏଣିକି ଉଡ଼" ଏହା କହି ତାକୁ ଛାଡ଼ି ଦେଲା । ଛାଡ଼ିଦେବା ମାତ୍ରେ ବିଚରା କଇଁଛଟି ଗୋଟିଏ ପାହାଡ଼ ଉପରେ ପଡ଼ି ଚୂନା ହୋଇଗଲା । ମରିବା ସମୟରେ କଇଁଛ ଭାବିଲା, "ମତେ ଉପଯୁକ୍ତ ଶାସ୍ତି ହୋଇଛି । ଭୂଇଁରେ ଟିକିଏ ଚାଲିବା ଯାହା ପକ୍ଷରେ କଷ୍ଟକର ତାର ଆକାଶରେ ଉଡ଼ିବାକୁ ଚେଷ୍ଟା କରିବା କି ଆବଶ୍ୟକ ଥିଲା ? ମୁଁ ବାମନ ହୋଇ ଚନ୍ଦ୍ରକୁ କାହିଁକି ହାତ ବଢ଼ାଇବାକୁ ଗଲି ?"

ମନୁଷ୍ୟ ଯାହା ଚାହେଁ ସବୁ ଯଦି ସେ ପାଉଥାନ୍ତା, ତାହାହେଲେ ତା'ର ଦୁର୍ଦ୍ଦଶାର ଆଉ ସୀମା ରହୁ ନ ଥାନ୍ତା ।

( ୬୨ )

# କାଉ ଓ ମୟୂରପୁଚ୍ଛ ।



ଗୋଟିଏ କାଉ ଦେଖିଲା ଯେ ଏକ ସ୍ଥାନରେ କେତେଗୁଡ଼ିଏ ମୟୂରପୁଚ୍ଛ ପଡ଼ିଅଛି । ସେ ମନେ କଲା, ଯଦି ମୁଁ ଏହି ପୁଚ୍ଛଗୁଡ଼ିକ ମୋ ପଙ୍ଖୀରେ ଖୋସି ଦେବି ତାହାହେଲେ ମୁଁ ମୟୂରପରି ବଡ଼ ସୁନ୍ଦର ଦିଶିବି । ଏହା ଭାବି ସେ ମୟୂରପୁଚ୍ଛଗୁଡ଼ିକ ଆପଣା ପଙ୍ଖୀରେ ଲଗାଇଦେଲା ଏବଂ କାଉମାନଙ୍କ ନିକଟକୁ ଯାଇ କହିଲା, ତୁମେମାନେ ବଡ଼ ନୀଚ ଓ ଅସୁନ୍ଦର । ମୁଁ ଆଉ ତୁମମାନଙ୍କ ସଙ୍ଗେ ରହିବି ନାହିଁ । ଏହିପରି କହି ସେ ମୟୂରମାନଙ୍କ ସଙ୍ଗେ ମିଶିବାକୁ ଗଲା ।



ମୟୂରମାନେ ଦେଖିଲାମାତ୍ରେ ତାକୁ କାଉ ବୋଲି ଚିହ୍ନିପାରି ତାହାଠାରୁ ପ୍ରତ୍ୟେକେ ଗୋଟିଏ ଗୋଟିଏ କରି ମୟୂରପୁଚ୍ଛତକ ସବୁ କାଢ଼ିନେଲେ ଓ ତାକୁ ନିତାନ୍ତ ନିର୍ବୋଧ ମନେ କରି ଏପରି ଭାବରେ କାମୁଡ଼ିବାକୁ ଲାଗିଲେ ଯେ, ସେ ବିବ୍ରତ ଅସ୍ଥିର ହୋଇ ସେଠାରୁ ପଳାଇ ଆସିଲା । ହତାଶ ହୋଇ ଶେଷରେ ସେ ନିଜ ଦଳରେ ମିଶିବାକୁ ଗଲା । ତାକୁ ଦେଖି କାଉମାନେ ନାନା ଥଟ୍ଟା ପରିହାସ କରି କହିଲେ, "ତୋଠାରୁ ବଳି ନିର୍ବୋଧ ଆଉ କେହି ନାହିଁ । ସେତେବେଳେ ଦେହରେ ଦିଟା ମୟୂରପୁଚ୍ଛ ଖୋସିଦେଇ ତୁ ଗର୍ବରେ ଆମ୍ଭମାନଙ୍କୁ ଛାଡ଼ି ଚାଲି ଯାଇଥିଲୁ, ବର୍ତ୍ତମାନ ପୁଣି କେଉଁ ନିର୍ଲଜ୍ଜ ମୁହଁରେ ଏଠାକୁ ଆସିଛୁ ? ଏପରି ଅବିଶ୍ୱାସୀ ଲୋକଙ୍କୁ ଆମ୍ଭେମାନେ ଆଉ ଦଳରେ ରଖିବାକୁ ଚାହୁଁ ନାହିଁ ।" ଏହିପରି ନାନା ଗାଳି ଦେଇ ସେମାନେ କାଉଟିକୁ ତଡ଼ି ଦେଲେ ।

ଯେ ଯେଉଁ ଅବସ୍ଥାର ଲୋକ ସେ ଯଦି ସେହି ଅନୁସାରେ ନ ଚଳେ ତାହାହେଲେ ତାକୁ ପଦେ ପଦେ ଅପଦସ୍ତ ହେବାକୁ ପଡ଼େ ।

( ୭୩ )

## ଧୋବା ଓ କୋଇଲା ବ୍ୟବସାୟୀ ।



ଜଣେ କୋଇଲା ବ୍ୟବସାୟୀ ତାର ନିଜ ଘରେ ଥାଇ ବ୍ୟବସାୟ କରୁଥାଏ । ଦିନେ ସେ ତାର ବନ୍ଧୁ ଧୋବାକୁ ଦେଖି କହିଲା, "ତୁମେ ଆସ, ଆମ୍ଭେମାନେ ଏହିଠାରେ ଏକାସଙ୍ଗରେ ରହିବା ତାହାହେଲେ ଆମ୍ଭମାନଙ୍କର ବନ୍ଧୁତା ଦୃଢ଼ ରହିବ ଏବଂ ଖରଚ ମଧ୍ୟ ଅନେକ ପରିମାଣରେ କମିଯିବ ।" ଧୋବା କହିଲା, "ଭାଇ ଏଥି ହେଲେ ଭଲ ହୁଅନ୍ତା ସତ କିନ୍ତୁ ତାହାହେଲେ ମୋର ବ୍ୟବସାୟ ଆଉ ଚଳି ପାରିବ ନାହିଁ । ମୁଁ ଯାହା ବସ୍ତ୍ର ପରିଶ୍ରମ କରି ସଫା କରିବି, ତୁମେ ତାକୁ ସାଙ୍ଗେ ସାଙ୍ଗେ ତୁମ କୋଇଲାଦ୍ୱାରା କଳା କରି ଦେବ ।"

ସମାନ ସମାନ ମଧ୍ୟରେ ବନ୍ଧୁତା ହୁଏ ।



( ୭୪ )

## ବିଲୁଆ ଓ କାଠୁରିଆ ।



ଦିନେ କେତେଗୁଡ଼ାଏ ଶିକାରୀ ସାଙ୍ଗରେ ଦଳେ କୁକୁର ଯେନି ବିଲୁଆକୁ ତଡ଼ିବାରୁ ସେ ଦୌଡ଼ି ଆସି ଗୋଟିଏ କାଠୁରିଆ ନିକଟରେ ପହଞ୍ଚି କହିଲା, "ଭାଇ ଯଦି ଦୟା କରି ମୋତେ ଟିକିଏ ଆଶ୍ରୟ ଦିଅନ୍ତ ତାହାହେଲେ ମୁଁ ଏଥର ରକ୍ଷା ପାଇ ଯାନ୍ତି ।" କାଠୁରିଆ କହିଲା, "କିଛି ଭୟ ନାହିଁ, ମୋ କୁଡ଼ିଆ ଭିତରକୁ ଯାଇ ତୁମେ ଲୁଚି ରହ ।" ବିଲୁଆ କୁଡ଼ିଆରେ ପଶି ଗୋଟିଏ କଣରେ ଲୁଚି ରହିଲା ।

କିଛିକ୍ଷଣ ପରେ ଶିକାରୀମାନେ ସେଠାରେ ପହଞ୍ଚି କାଠୁରିଆକୁ ପଚାରିଲେ, "ଭାଇ ଏ ବାଟକୁ ଗୋଟିଏ ବିଲୁଆ ପଳାଇ ଆସିଲା, କୁଆଡ଼େ ଗଲା କହି ପାରିବ ?" ସେ କିଛି ନ କହି କୁଡ଼ିଆ ଆଡ଼କୁ ଆଙ୍ଗୁଠି ଦେଖାଇ ଦେଇ ରହିଲା । ଶିକାରୀମାନେ ତାର ସଙ୍କେତ ବୁଝି ନ ପାରି ଫେରିଗଲେ ।

ଶିକାରୀମାନେ ଚାଲି ଯିବାରୁ ବିଲୁଆ କୁଡ଼ିଆରୁ ବାହାରି କାଠୁରିଆକୁ କିଛି ନ କହି ଚାଲି ଯିବାକୁ ଲାଗିଲା । ଏହା ଦେଖି କାଠୁରିଆ ବିଲୁଆକୁ ଡାକି ଦେଇ କହିଲା, "ତୁମେ ବଡ଼ ଅଭଦ୍ର । ମୁଁ ବିପଦ ସମୟରେ ଆଶ୍ରୟ ଦେଇ ତୁମର ପ୍ରାଣ ରକ୍ଷା କଲି, କିନ୍ତୁ ତୁମେ ଯିବା ସମୟରେ ମୋତେ ପଦେ କଥା କହି ଗଲ ନାହିଁ ?" ବିଲୁଆ କହିଲା, "ଭାଇ, ତୁମେ କଥାରେ ଯେପରି ଭଦ୍ରତା ଦେଖାଇଲ, ଆଙ୍ଗୁଠିରେ ଯଦି ସେହିପରି କରିଥାନ୍ତ ତାହାହେଲେ ମୁଁ ତୁମଠାରୁ ବିଦାୟ ନ ନେଇ କଦାପି ଯାଇ ନ ଥାନ୍ତି ।"

ପଦେ କଥାରେ ଯେତେ ଅନିଷ୍ଟ ହୁଏ ଟିକିଏ ଇଙ୍ଗିତରେ ମଧ୍ୟ ସେହିପରି ଅନିଷ୍ଟ ହୋଇ ପାରେ ।



( ୬୫ )

## ପେଟ ଓ ଅନ୍ୟାନ୍ୟ ଅଙ୍ଗପ୍ରତ୍ୟଙ୍ଗ ।

ଏକ ସମୟରେ ହାତ ଗୋଡ଼ ପ୍ରଭୃତି ଅଙ୍ଗପ୍ରତ୍ୟଙ୍ଗମାନେ ମିଳି ବିଚାରି କଲେ, ଦେଖ ଆମ୍ଭେମାନେ ସର୍ବଦା ପରିଶ୍ରମ କରି ପେଟର ସେବା କରୁଛୁଁ, କିନ୍ତୁ ପେଟ କିଛି ନ କରି ନିଷ୍କର୍ମା ହୋଇ ବସି ରହୁଛି । ସେ ସୁଖରେ ବହିଁସମୟ କଟାଉଛି, ଆମ୍ଭେମାନେ କାହିଁକି ମିଛରେ ତାର ସେବା କରି ମରୁଛୁ ? ତେବେ ଚାଲ ପ୍ରତିଜ୍ଞା କରିବା ଆଜିଠାରୁ ଆଉ କେହି ପେଟକୁ

ସାହାଯ୍ୟ କରିବା ନାହିଁ । ଏହିପରି ଏକମେଳ ହୋଇ ସେମାନେ ନିଜ ନିଜର ପରିଶ୍ରମ ଛାଡ଼ିଦେଲେ । ଗୋଡ଼ ଆଉ ଖାଇବା ସ୍ଥାନକୁ ଗଲା ନାହିଁ । ହାତ ଆଉ ପାଟିକି ଆହାର ନେଲା ନାହିଁ । ପାଟି ଆଉ ଖାଇଲା ନାହିଁ । ଦାନ୍ତ ଆଉ ଚୋବାଇଲା ନାହିଁ । ଜିଭ ଆଉ ସ୍ୱାଦ ବାରିଲା ନାହିଁ ।

ପେଟକୁ କିଛି ଦେବାନାହିଁ ଏହିପରି ଦୁଇ ଚାରି ଦିନ କରିବାରୁ ଦେହ ଶୁଖି ହୋଇ ଆସିଲା । ଅଙ୍ଗପ୍ରତ୍ୟଙ୍ଗମାନେ ଏପରି ନିସ୍ତେଜ ହୋଇ ପଡ଼ିଲେ ଯେ ଆଉ ସେମାନଙ୍କର ଚଳିବାର ଶକ୍ତି ରହିଲା ନାହିଁ । ଶେଷରେ ସେମାନେ ବୁଝି ପାରିଲେ ଯେ ପେଟ ପରିଶ୍ରମ ନ କଲେ କଣ ହେବ, ଆମ୍ଭେମାନେ ଯେପରି ତାକୁ ସାହାଯ୍ୟ କରୁଁ ସେ ମଧ୍ୟ ସେହିପରି ଆମ୍ଭମାନଙ୍କୁ ସାହାଯ୍ୟ କରେ । ପେଟ ଆମ୍ଭମାନଙ୍କପରି ଦେହର ଗୋଟିଏ ପ୍ରଧାନ ଅଙ୍ଗ । ସୁସ୍ଥ ରହିବାକୁ ହେଲେ ପ୍ରତି ଅଙ୍ଗ ପ୍ରତ୍ୟଙ୍ଗଙ୍କୁ ନିଜ ନିଜର କାର୍ଯ୍ୟ କରିବାକୁ ହେବ, ନ ହେଲେ କାହାର ରକ୍ଷା ନାହିଁ ।

—o—

(୨୬)

## ବୁଢ଼ା ସିଂହ ।



ଗୋଟିଏ ସିଂହ ବୁଢ଼ା ହେବାରୁ ଅତିଶଯ୍ୟ ଦୁର୍ବଳ ଓ ଅକ୍ଷମ ହୋଇ-ପଡ଼ିଲା । ଦିନେ ସେ ଭୂଇଁରେ ପଡ଼ି ଯନ୍ତ୍ରଣାରେ ଛଟପଟ ହେଉଛି, ଏପରି ସମୟରେ ଗୋଟିଏ ବରାହ ସେଠାରେ ପହଞ୍ଚିଲା । ଏହି ବରାହ ସାଙ୍ଗରେ ସିଂହର ପୂର୍ବରୁ ବିରୋଧ ଥିଲା । ସିଂହକୁ ଏପରି ଅବସ୍ଥାରେ ପଡ଼ିଥିବାର ଦେଖି ସେ ଅନେକ ଥର ତାକୁ ଦାନ୍ତରେ ଭୁସିଦେଇ ଚାଲିଗଲା । ସିଂହର ତ ଆଉ ଉଠିବାର କ୍ଷମତା ନାହିଁ ସେ ବାଧ୍ୟ ହୋଇ ସବୁ ସହିଲା । କିଛିକ୍ଷଣେ ପରେ ଗୋଟିଏ ଷଣ୍ଢ ଆସି ସେଠାରେ ପହଞ୍ଚିଲା । ଏହା ସାଙ୍ଗେ ମଧ୍ୟ ସିଂହର ପୂର୍ବରୁ

ବିବାଦ ଥିଲା; ସେ ସୁବିଧା ଦେଖି ସିଂହକୁ ଦି ଶୃଙ୍ଗର ମୁଣ୍ଡିଆ ପକାଇ ଚାଲିଗଲା । ଏ ଅପମାନ ମଧ୍ୟ ସିଂହ ସହ୍ୟ କରି ରହିଲା ।

ଏ ସବୁ ଦେଖି ଗଧ ମନେ କଲା, ସିଂହର ଯେତେବେଳେ ବଳ ବୀର୍ଯ୍ୟ ଥିଲା, ସେ ଆମ୍ଭମାନଙ୍କ ଉପରେ ନାନା ଅତ୍ୟାଚାର କରିଛି । ସେଥିଲାଗି ସମସ୍ତେ ଆସି ତାର ପ୍ରତିଶୋଧ ନେଉଅଛନ୍ତି । ସିଂହର ତ ଆଉ ସେ ତେଜ ନାହିଁ, ସେ କାହାରିକୁ କିଛି କରି ପାରୁ ନାହିଁ । ମୁଁ ବା ଏ ସୁଯୋଗ ଛାଡ଼ିବି କାହିଁକି ? ଏହା ଭାବି ଗଧ ଯାଇଁ ସିଂହର ମୁଣ୍ଡରେ ଦୁଇଟା ଗୋଇଠା ମାରିଲା । ଏ ସବୁ ଦେଖି ସିଂହ ଭାବିଲା, "ହାରେ ଅଦୃଷ୍ଟ ! ଯେଉଁମାନେ ମତେ ଦେଖିଲା-ମାତ୍ରେ ଭୟରେ କମ୍ପୁଥିଲେ, ସେମାନେ ଆସି ମତେ ଏପରି ଅପମାନ ଦେଇ ଗଲେ ? ଆଉ କଣ ଭାଗ୍ୟରେ ଅଛି କେଜାଣି ? ଯାହାହେଉ, ବରାହ ଓ ଷଣ୍ଢ ବଳବାନ୍ ଜନ୍ତୁ, ସେମାନଙ୍କ ଅତ୍ୟାଚାର ଅବା ସହ୍ୟ ହେଲା, କିନ୍ତୁ ଗଧ ଯେ କି ପଶୁମାନଙ୍କ ମଧ୍ୟରେ ଅଧମ ସେ ଆସି ମତେ ଏପରି ଅପମାନ ଦେଇ ଗଲା । ଏହା ଅପେକ୍ଷା ମରଣ ଶତଗୁଣରେ ଭଲ ।"

( ୬୭ )

## ଷଣ୍ଢ ଓ ମଶା ।

ଗୋଟିଏ ମଶା କିଛିକ୍ଷଣ ଉଡ଼ି ଉଡ଼ି ଗୋଟିଏ ଷଣ୍ଢର ଶିଙ୍ଗ ଉପରେ ବସି ପଡ଼ିଲା । ସେ ଭାବିଲା, ମୁଁ ଯେ ଷଣ୍ଢ ଉପରେ ବସିଲି ଏଥିରେ ତାର ବଡ଼ କଷ୍ଟ ହେଉଥିବ ପରା । ସେ ଷଣ୍ଢକୁ ପଚାରିଲା, "ଭାଇ ମୋ ଭାର ତୁମେ ଯଦି ସହିପାରୁ ନାହିଁ, ତେବେ କହ ମୁଁ ଏଠାରୁ ଉଡ଼ିଯିବି । ତୁମକୁ ବୃଥାରେ କଷ୍ଟଦେବା ମୋର ଇଚ୍ଛା ନୁହେଁ ।" ଷଣ୍ଢ ହସି କରି କହିଲା, "ସେଥିଲାଗି ତୁମର ଚିନ୍ତା କରିବାକୁ ହେବ ନାହିଁ । ତୁମର ବସିବା ନ ବସିବା ମୋ ପକ୍ଷରେ

ସମାନ, ତୁମେ ଯେତେବେଳେ ଆସି ମୋ ଉପରେ ବସିଲ ତାହା ମୁଁ ଜାଣେ ନାହିଁ, ଆଉ ତୁମେ ଚାଲିଗଲେ ମଧ୍ୟ ମୁଁ କିଛି ଜାଣି ପାରିବି ନାହିଁ ।"

ଯାର ମନ ଯେତେ ଶ୍ରେଷ୍ଠ ତାର ଅହଙ୍କାର ସେତେ ବେଶି ।

— — ଃ✻ଃ — —

( ୬୮ )

## ଦାର୍ଶନିକ, ପିମ୍ପୁଡ଼ି ଓ ଦେବଦୂତ ।



ଥରେ ଜଣେ ଦାର୍ଶନିକ ପଣ୍ଡିତ ସମୁଦ୍ର କୂଳରେ ବୁଲି ବୁଲି ଦେଖିଲେ ଝଡ଼ ହୋଇ ଖଣ୍ଡିଏ ଜାହାଜ ଭାଙ୍ଗିଗଲା ଏବଂ ସେଥିରେ ଯେତେ ଲୋକ ଥିଲେ ସମସ୍ତେ ବୁଡ଼ିଗଲେ । ସେ ବିଚାରିଲେ, ଈଶ୍ୱରଙ୍କର ଏ କି ଅବିଚାର ! ହୁଏତ ଜାହାଜ ମଧ୍ୟରେ ଜଣେ କି ଦୁଇଜଣ ମାତ୍ର ଦୋଷୀ ଥିବେ, ସେଥିଲାଗି ଏତେଗୁଡ଼ାଏ ନିର୍ଦ୍ଦୋଷୀ ଲୋକ ପ୍ରାଣ ହରାଇଲେ କାହିଁକି ? ଏହିପରି ମନେ ମନେ ଭାବୁଛନ୍ତି, ଏପରି ସମୟରେ ସେ ଗୋଟିଏ ପିମ୍ପୁଡ଼ି ବସା ଉପରେ ଗୋଡ଼ ପକାଇ ଦେବାରୁ ଦଳେ ପିମ୍ପୁଡ଼ି ଆସି ତାଙ୍କୁ ବେଢ଼ି ପକାଇଲେ । ସେଥି ମଧ୍ୟରୁ ଗୋଟିଏ ପିମ୍ପୁଡ଼ି ଉପରକୁ ଉଠିଯାଇ ତାଙ୍କୁ ଗୋଟେ କାମୁଡ଼ି ଦେଲା । ଦାର୍ଶନିକ ଆଉ ସମ୍ଭାଳି ନ ପାରି ସବୁ ପିମ୍ପୁଡ଼ିଗୁଡ଼ିକ ଗୋଡ଼ରେ ଦଳି ମାରି ପକାଇଲେ । ଏପରି ସମୟରେ ଜଣେ ଦେବଦୂତ ତାଙ୍କ ନିକଟକୁ ଆସି କହିଲେ, "ତୁମେ ପରା ଏହିକ୍ଷଣି ଈଶ୍ୱରଙ୍କୁ ନିନ୍ଦା କରୁଥିଲ ? ତୁମେ ନିଜେ କାହିଁକି ଏ ନିର୍ଦ୍ଦୋଷୀ ପିମ୍ପୁଡ଼ିଙ୍କୁ ଦଳି ପକାଇଲ ? ଗୋଟିଏ ଯୋଡ଼ିଏ ପିମ୍ପୁଡ଼ି ଅବା ତୁମକୁ କାମୁଡ଼ିଥିବେ । ଅନ୍ୟ ପିମ୍ପୁଡ଼ିମାନେ ତ ତମର କିଛି କରି ନ ଥିଲେ । ଈଶ୍ୱରଙ୍କ କାର୍ଯ୍ୟର ଭଲ ମନ୍ଦ ବିଚାର କରିବାକୁ ତମର କି ଅଧିକାର ଅଛି ?"

— — ✻ — —

( ୬୯ )

## ଠେକୁଆ ଓ ବେଙ୍ଗ ।



ଠେକୁଆଗୁଡ଼ାକ ବଡ଼ ଦୁର୍ବଳ ଓ ଡରୁଆ । ବଡ଼ ବଡ଼ ଜନ୍ତୁମାନେ ସେମାନଙ୍କୁ ଦେଖିଲାମାତ୍ରେ ଖାଇଦଅନ୍ତି । ଏଥିଲାଗି ସେମାନେ ଜୀବନ ଭୟରେ



ବଡ଼ ଶଙ୍କିତ ହୋଇଥାନ୍ତି । ଦିନେ ସେମାନେ ବିଚାର କଲେ, ସର୍ବଦା ଏପରି ଭୟରେ ବଞ୍ଚି ରହି ଫଳ କଣ ? ଚାଲ ଆମ୍ଭେମାନେ ଅଗାଧ ପାଣିରେ ବୁଡି ମରିବା, ସର୍ବଦା ମରଣକୁ ଭୟ କରି ରହିବା ଅପେକ୍ଷା ଥରେ ମରିଯିବା ଭଲ । ଏହିପରି ପ୍ରତିଜ୍ଞା କରି ସେମାନେ ଗୋଟିଏ ପୋଖରୀରେ ଡେଇଁପଡ଼ି ମରିବାଲାଗି ସେଠାରେ ଯାଇଁ ପହଞ୍ଚିଲେ ।

ସେହି ପୋଖରୀକୂଳରେ କେତେଗୁଡ଼ାଏ ବେଙ୍ଗ ଥିଲେ । ସେମାନେ ଠେକୁଆମାନଙ୍କ ପାଦ ଶବ୍ଦ ଶୁଣି ଭୟରେ ଝପ୍ ଝପ୍ ହୋଇ ପାଣିକି ଡେଇଁ

ପଡ଼ିଲେ । ଏହା ଦେଖି ଗୋଟିଏ ଠେକୁଅ କହିଲା, "ଦେଖ ଭାଇମାନେ, ଆମ୍ଭମାନଙ୍କଠାରୁ ବଳ ଦୁର୍ବଳ ଓ ଭୀରୁଅ ଜନ୍ତୁ ମଧ୍ୟ ସଂସାରରେ ଅଛନ୍ତି, ତେବେ ଆମ୍ଭେମାନେ ବୃଥାରେ କାହିଁକି ଭୟରେ ପ୍ରାଣ ହରାଇବା ।"

ନିଜର ଅବସ୍ଥା ଖରାପ ବୋଲି ଯେଉଁମାନେ ଦୁଃଖ କରନ୍ତି, ସେମାନେ ଅନ୍ୟର ଖରାପ ଅବସ୍ଥାର ଲୋକ ଦେଖିଲେ ସେମାନଙ୍କର ଟିକିଏ ସାନ୍ତ୍ୱନା ଆସେ ।

( ୭୦ )

## ଗଧ ଓ ମନୁଷ୍ୟ ।



ଥରେ ଗୋଟିଏ ମନୁଷ୍ୟ ତାର ପାଖରେ ଗଧଟିକୁ ଚରିବାକୁ ଛାଡ଼ିଦେଇ ପାଖରେ ଛିଡ଼ା ହୋଇଥିଲା । ହଠାତ୍ ଶତ୍ରୁ ଆସିବାର ଶବ୍ଦ ଶୁଣିପାରି ସେ ଗଧକୁ କହିଲା, ''ଶତ୍ରୁ ଆସି ପହଞ୍ଚିଲେଣି । ଆସ ଶୀଘ୍ର ପଳାଇବା, ନ ହେଲେ ଦୁହେଁଯାକ ଧରା ପଡ଼ିବା ।" ଗଧ କହିଲା, "ତୁମେ ପଳାଉଛ ପଳାଅ, ମୁଁ କାହିଁକି ପଳେଇବି ? ତୁମେ କଣ ମନେ କରୁଛ ଶତ୍ରୁ ଆସି ମତେ ଧରିଲେ ମୋ ଉପରେ ଦୁ'ଟା ବୋଝ ଲଦିବ ?" ଲୋକଟି କହିଲା, "ନାହିଁ ।" ଗଧ କହିଲା, ''ତେବେ ମୋର ପଳାଇବାର ଆବଶ୍ୟକ କଣ ? ତୁମେ ଲଦିଲେ ମୋ ପକ୍ଷରେ ଯାହା, ଆଉ ଯେ ଲଦିଲେ ସେଇଆ ।"

ଏକ ରଜା ଯାଇ ଅନ୍ୟ ରଜା ଆସିଲେ ଗରିବଙ୍କର ସେଥିରେ କିଛି ଯାଏ ଆସେ ନାହିଁ, କେବଳ ରଜାର ନାମଟି ବଦଳେ ମାତ୍ର ।



( ୭୧ )

## ପକ୍ଷୀ ଓ ଶବର ।



ଜଣେ ଶବର ଜାଲ ପକାଇ ଗୋଟିଏ ପକ୍ଷୀ ଧରିଲା । ପକ୍ଷୀଟି ଶବରକୁ ନାନା ପ୍ରକାର ବିନୟ କରି କହିଲା, "ଭାଇ ମତେ ଛାଡ଼ିଦିଅ, ମୁଁ ପ୍ରତିଜ୍ଞା କରି କହୁଛି ମତେ ଛାଡ଼ିଦେଲେ ମୁଁ ଅନ୍ୟାନ୍ୟ ପକ୍ଷୀମାନଙ୍କୁ ଭୁଲାଇ ଆଣି ତୁମ ଜାଲରେ ପକାଇବି, ତାହାହେଲେ ଭାବି ଦେଖ ତୁମର କେତେ ଲାଭ ହେବ । ଗୋଟିଏ ପକ୍ଷୀ ବଦଳରେ ତୁମେ କୋଡ଼ିଏ ପକ୍ଷୀ ପାଇ ପାରିବ ।"

ଶବର କହିଲା, "ନା ମୁଁ ତମକୁ ଛାଡ଼ିବି ନାହିଁ । ଯେ ନିଜର ମଙ୍ଗଳ ପାଇଁ ଆପଣାର ବନ୍ଧୁବାନ୍ଧବମାନଙ୍କର ସର୍ବନାଶ କରିବାକୁ ଇଚ୍ଛେ ତାହାଠାରୁ ବଳି ଦୋଷୀ ଆଉ କେହି ନାହାନ୍ତି । ସେ ମଲେ ସଂସାରର ମଙ୍ଗଳ ।"



( ୭୨ )

## କୁରାଢ଼ି ଓ ଜଳଦେବତା ।



ଗୋଟିଏ ଦୁଃଖୀଲୋକ ନଈକୂଳରେ କାଠ ହାଣୁଥିଲା । ହଠାତ୍ ତାର କୁରାଢ଼ିଖଣ୍ଡିକ ହାତରୁ ଖସି ଯାଇ ପାଣିରେ ପଡ଼ି ବୁଡ଼ିଗଲା । ଆଉ କୁରାଢ଼ିଖଣ୍ଡି ପାଇବ ନାହିଁ ଭାବି ଅତି ଦୁଃଖିତ ହୋଇ ସେ କାନ୍ଦିବାକୁ ଲାଗିଲା । ତା'ର କାନ୍ଦ ଶୁଣି ଜଳଦେବତାଙ୍କର ଦୟା ହେଲା । ସେ ତା' ନିକଟକୁ ଆସି କହିଲେ, "ତୁମେ କାନ୍ଦୁଛ କାହିଁକି ?" ସେ ସମୁଦାୟ ବିଷୟ କହିବାରୁ ଜଳଦେବତା ନଈରେ ବୁଡ଼ି ହାତରେ ଖଣ୍ଡିଏ ସୁନାର କୁରାଢ଼ି ଧରି ତାକୁ ପଚାରିଲେ, "ଏ କୁରାଢ଼ି ତୁମର ?" ସେ କହିଲା, "ନା ଏ କୁରାଢ଼ି ମୋର ନୁହେଁ ।" ଜଳଦେବତା ପାଣିରେ ବୁଡ଼ି ଆଉ ଖଣ୍ଡିଏ ରୂପାର କୁରାଢ଼ି

ଦେବତା ନିକଟକୁ ଆସି ପୂର୍ବପରି ପଚାରିଲେ । ସେ କହିଲା, "ଏ ମଧ୍ୟ ମୋର ନୁହେ ।" ସେ ଆଉ ଥରେ ପାଣିରେ ବୁଡ଼ି ତାହାର ଲୁହା କୁରାଢ଼ି ଖଣ୍ଡି ଧରି ପଚାରିଲେ, "ଏ କଣ ତୁମ କୁରାଢ଼ି ?" ସେ ନିଜର କୁରାଢ଼ି ଖଣ୍ଡି ଦେଖି ଅତି ଖୁସି ହୋଇ କହିଲା, "ହଁ ମହାଶୟ, ଏଖଣ୍ଡି ମୋ କୁରାଢ଼ି । କୁରାଢି ଖଣ୍ଡି ପାଇବି ବୋଲି ମୋର ଆଶା ନ ଥିଲା, କେବଳ ଆପଣଙ୍କ ଅନୁଗ୍ରହରୁ ପାଇଲି । ମୁଁ ବଡ଼ ଦୁଃଖୀ, ଆପଣ ମୋର ଯେଉଁ ଉପକାର କଲେ ତାହା ମୁଁ ଜୀବନରେ ଭୁଲି ପାରିବି ନାହିଁ ।" ଜଳଦେବତା ତାର ନିଜର କୁରାଢିଖଣ୍ଡି ତାକୁ ଦେଲେ ଓ ସେ ଅତି ନିର୍ଲୋଭୀ ଓ ସତ୍ୟବାଦୀ ବୋଲି ଖୁସି ହୋଇ ସୁନା ଓ ରୁପାର କୁରାଢି ଦୁଇଖଣ୍ଡି ମଧ୍ୟ ତାକୁ ପୁରସ୍କାର ଦେଲେ । ଦୁଃଖୀ ଲୋକଟି ସୁନା ଓ ରୁପାର କୁରାଢ଼ି ଦୁଇଖଣ୍ଡି ପାଇ ଘରକୁ ଆସି ସାଇପଡ଼ୋଶୀ ସମସ୍ତଙ୍କ ଆଗରେ ଏ ଅଦ୍ଭୁତ ଘଟଣା କହିଲା । ସମସ୍ତେ ଶୁଣି ବଡ଼ ଆଶ୍ଚର୍ଯ୍ୟ ହେଲେ ।

ଏ କଥା ଶୁଣି ଗୋଟିଏ ଲୋକର ବଡ଼ ଲୋଭ ହେଲା । ତହିଁ ଆରଦିନ ସକାଳୁ ସେ ଖଣ୍ଡିଏ କୁରାଢ଼ି ଧରି ନଈକୂଳକୁ ଗଲା । ଗୋଟିଏ ଗଛରେ ଚଢ଼ିର ଚୋଟେ ମାରି ହାତରୁ ଖସି ଯିବାରୁ ବାହାନା କରି ସେ କୁରାଢିଖଣ୍ଡି ପାଣିରେ ପକାଇ ଦେଲା ଏବଂ ଆହା କଅଣ ହେଲା ବୋଲି ବଡ଼ ପାଟିକରି କାନ୍ଦିବାକୁ ଲାଗିଲା । ଜଳଦେବତା ତା' ନିକଟକୁ ଆସି କାହିଁକି କାନ୍ଦୁଛୁ ବୋଲି ପଚାରିବାରୁ ସେ କୁରାଢି ପଡ଼ିଯିବା କଥା କହି ବଡ଼ ଦୁଃଖ କଲା । ଜଳଦେବତା ସେହିପରି ପାଣିରେ ବୁଡ଼ି ଖଣ୍ଡିଏ ସୁନାର କୁରାଢି ଧରି ତାକୁ ପଚାରିଲେ, "ଏ କୁରାଢି ତୁମର ?" ସୁନା କୁରାଢି ଦେଖି ସେ ଲୋଭ ସମ୍ଭାଳି ନ ପାରି କହିଲା, "ହଁ ଏ ମୋ କୁରାଢି ।" ଜଳଦେବତା ତାକୁ ଲୋଭୀ ଓ ମିଥ୍ୟାବାଦୀ ବୋଲି ଜାଣିଦେଇ କୁରାଢିଖଣ୍ଡି ପାଣିରେ ପକାଇ ଦେଇ ସେଠାରୁ ଚାଲିଗଲେ । ଲୋକଟି ହତାଶ ହୋଇ ଭାବିଲା, ମୋର ଯେପରି କାର୍ଯ୍ୟ ସେପରି ଫଳ ହୋଇଛି ।

—*—

( ୭୩ )

## ସିଂହ ଓ ମେଣ୍ଢାଜଗୁଆଳ ।



ଥରେ ଗୋଟିଏ ସିଂହ ଜଙ୍ଗଲରେ ବୁଲୁ ବୁଲୁ ଗୋଟିଏ କଣ୍ଟା ମାଡ଼ି ପକାଇଲା । ସେ ଯନ୍ତ୍ରଣାରେ କାତର ହୋଇ ଗୋଟିଏ ମେଣ୍ଢାଜଗୁଆଳ ପାଖକୁ ଗଲା ଏବଂ ଲାଙ୍ଗୁଡ଼ ହଲାଇ ଅନୁନୟ କରି ଯେପରି ତାକୁ କହିଲା "ମୁଁ କଷ୍ଟରେ ପଡ଼ି ତୁମର ସାହାଯ୍ୟ ଲୋଡ଼ିବାକୁ ଆସିଛି ।" ମେଣ୍ଢାଜଗୁଆଳ ସାହସ କରି ସିଂହକୁ ପରୀକ୍ଷା କରି ତାହା ଗୋଡ଼ରେ କଣ୍ଟା ଦେଖି ପାରିଲା ଓ ତାହା କୋଳରେ ସିଂହ ଗୋଡ଼କୁ ରଖି କଣ୍ଟାଟି ବାହାର କରି ଆଣିଲା । ସିଂହର ଗୋଡ଼ ଭଲ ହୋଇ ଯିବାରୁ ସେ ଖୁସି ହୋଇ ଜଙ୍ଗଲକୁ ଚାଲିଗଲା ।

ଏହାର କିଛି ସମୟପରେ ସେହି ମେଣ୍ଢାଜଗୁଆଳକୁ ଗୋଟାଏ ମିଥ୍ୟା ଅପରାଧରେ କଏଦୀ କରି ରଜା ହୁକୁମ ଦେଲେ ଯେ ତାର ଦୋଷର ଦଣ୍ଡସ୍ୱରୂପ ତାକୁ ସିଂହ ମୁହଁରେ ପକାଇ ଦେବାକୁ ହେବ । ସିଂହକୁ ଯେତେବେଳେ ପିଞ୍ଜରାରୁ ବାହାର କରି ଦିଆଗଲା, ସେ ମେଣ୍ଢାଜଗୁଆଳ ପାଖକୁ ଯାଇ ଚିହ୍ନି ପାରିଲା ଯେ ଯେଉଁ ଲୋକ ତାର ଗୋଡ଼ ଭଲକରି ଦେଇଥିଲା ଏ ସେହି । ତେଣୁ ତାର କିଛି ଅନିଷ୍ଟ କରିବା ଦୂରେ ଥାଉ, ସେ ଧୀରଭାବରେ ତା କୋଳରେ ଗୋଡ଼ ରଖି ତାକୁ ଅନାଇ ରହିଲା । ରଜା ଶେଷରେ ସବୁ କଥା ଶୁଣି ତାର ସିଂହକୁ ଜଙ୍ଗଲକୁ ଛାଡ଼ିଦେଲେ ଓ ମେଣ୍ଢାଜଗୁଆଳର ଦୋଷ କ୍ଷମା କରି ତାକୁ ଖଲାସ ଦେଲେ ।



ଗଧିଆକୁ କହିଲା, "ଗଧିଆ ଭାଇ, ମୁଁ ଜାଣେ ଯେ ମୁଁ ଆଜ ତୁମର ଆହାର ହେବି । କିନ୍ତୁ ମରିବା ପୂର୍ବରୁ ମୋର ତୁମକୁ ଗୋଟିଏ ମାଗୁଣି ଅଛି । ମାଗୁଣି ଏହିଆ ଯେ ତୁମେ ଟିକେ ବଂଶୀ ବଜାଇଲେ ମୁଁ ଟିକିଏ ନାଚନ୍ତି ।" ଗଧିଆ ଏଥିରେ ରାଜି ହୋଇ ବଂଶୀ ବଜାଇବାରୁ ଛେଳିଛୁଆ ନାଚିବାକୁ ଲାଗିଲା । ବଂଶୀ ଶବ୍ଦ ଶୁଣି ବଣିଆ କୁକୁରମାନେ ତାହାଉପରୁ ଗଧିଆକୁ ଚଡ଼ିଲେ । ଗଧିଆ ଛେଳିଛୁଆ ଆଡ଼କୁ ଫେରି କହିଲା, "ମୋ ପ୍ରତି ଠିକ୍ ବ୍ୟବହାର ହୋଇଛି । ମୋର ତ କଂସେଇ ବ୍ୟବସାୟ । ତୁମକୁ ଖୁସି କରାଇବା ଲାଗି ମୁଁ ବଂଶୀ ବଜାଇବାକୁ ଗଲି କାହିଁକି ?"



( ୭୭ )

## ଦୁଇଜଣ ବାଟୋଇ ଓ କୁରାଢ଼ି ।



ଦୁଇଜଣ ଲୋକ ଏକ ସଙ୍ଗରେ ଯାଉଥିଲେ । ସେଥିମଧ୍ୟରୁ ଜଣେ ବାଟରେ ଖଣ୍ଡିଏ କୁରାଢ଼ି ପଡ଼ିଥିବାର ଦେଖିପାରି ତାକୁ ଗୋଟାଇ ଆଣି କହିଲା, "ମୁଁ ଖଣ୍ଡେ କୁରାଢ଼ି ପାଇଲି ।" ଅନ୍ୟ ଜଣକ କହିଲା, "ଭାଇ 'ମୁଁ' ପାଇଲି ବୋଲି କାହିଁକି କହୁଛ, 'ଆମ୍ଭେମାନେ କୁରାଢ଼ି ଖଣ୍ଡି ପାଇଲୁ' ବୋଲି କହ ।" ସେମାନେ ବେଶୀ ଦୂର ନ ଯାଉଣୁ ଦେଖି ପାରିଲେ ଯେ କୁରାଢ଼ିର ମାଲିକ ସେମାନଙ୍କୁ ଡାକୁଛି । ଯେ କୁରାଢ଼ି ଖଣ୍ଡି ଗୋଟାଇଥିଲା ସେ କହିଲା, "ଭାଇ, ଆମ୍ଭମାନଙ୍କର ସର୍ବନାଶ ହେଲା ।" ଅନ୍ୟ ଜଣକ ତାକୁ କହିଲା, "ଭାଇ, ତୁମେ ପ୍ରଥମେ ଯେପରି କହୁଥିଲ, ବର୍ତ୍ତମାନ ସେହିପରି କହ, 'ମୋର ସର୍ବନାଶ ହେଲା', 'ଆମ୍ଭମାନଙ୍କର' ବୋଲି କାହିଁକି କହୁଛ ?"

( ୭୮ )

## ଭାଇ ଓ ଭଉଣୀ ।



ଗୋଟିଏ ଲୋକର ଗୋଟିଏ ପୁଅ ଓ ଗୋଟିଏ ଝିଅ ଥିଲେ । ପୁଅଟି ଦେଖିବାକୁ ଖୁବ୍ ସୁନ୍ଦର କିନ୍ତୁ ଝିଅଟିର ଚେହେରା ଅତି କୁତ୍ସିତ । ଦିନେ ଖେଳୁ ଖେଳୁ ଦୈବାତ୍ ମାଙ୍କ ଦର୍ପଣ ଉପରେ ଏକ ସମୟରେ ସେମାନଙ୍କର ଦୃଷ୍ଟି ପଡ଼ିଲା । ବାଳକ ଦର୍ପଣରେ ନିଜ ଚେହେରା ଦେଖି ବଡ଼ ଖୁସି ହେଲା; ବାଳିକାଟି କିନ୍ତୁ ଭାଇକୁ ନିଜର ପ୍ରଶଂସା କରିବାର ଦେଖି ବଡ଼ ରାଗିଗଲା; ସେ ମନେ କଲା; ମୋର ଅସୁନ୍ଦର ଚେହେରା ଦେଖି ଏ ମତେ ଥଟ୍ଟା କରି ଏପରି କହୁଛି । ସେ ଭାଇକୁ ଗାଳି ଖୁଆଇବ ବୋଲି ଦୌଡ଼ିଯାଇ ବାପାଙ୍କୁ କହିଲା, "ଝିଅମାନଙ୍କର କେବଳ ଦର୍ପଣରେ ମୁହଁ ଦେଖିବାର କଥା, କିନ୍ତୁ ଏ ପୁଅ ହୋଇ ଦର୍ପଣରେ ମୁହଁ ଦେଖୁଛି ।" ଲୋକଟି ପୁଅ ଝିଅ ଉଭୟଙ୍କୁ ସ୍ନେହରେ କୋଳରେ ଧରି ଓ ସେମାନଙ୍କର ମୁଖ ଚୁମ୍ବନ କରି କହିଲା, "ମୋର ଇଚ୍ଛା ଯେ ତୁମେ ଉଭୟେ ପ୍ରତିଦିନ ଦର୍ପଣରେ ମୁହଁ ଦେଖ । ତାହାହେଲେ ପୁଅ, ତୁ ଆଉ ମନ୍ଦ ଆଚରଣଦ୍ୱାରା ନିଜର ଚେହେରା ନଷ୍ଟ କରିବୁ ନାହିଁ ଏବଂ ତୁ ମଧ ଝିଅ, ସଦ୍‌ଗୁଣଦ୍ୱାରା ତୋର ସୁନ୍ଦରପଣର ଅଭାବ ପୂରଣ କରିବୁ ।"



( ୭୯ )

## ସିଂହ ଗଧିଆ ଓ କୋକିଶିଆଳି ।



ଗୋଟିଏ ସିଂହ ବୁଢ଼ା ହୋଇଯିବାରୁ ବେମାର ହୋଇ ତାର ଗୁମ୍ଫାରେ ପଡ଼ି ରହିଲା । ସବୁ ଜନ୍ତୁମାନେ ତାକୁ ଦେଖିବାକୁ ଆସିଲେ । କେବଳ କୋକିଶିଆଳି ଆସିଲା ନାହିଁ । ଗଧିଆ ଏ ସୁଯୋଗ ପାଇ ସିଂହ ପାଖରେ କୋକି-

ଟିଗ୍ୟାଳର ଦୋଷ ଦେଖାଇ କହିଲେ, "କୋକଶିୟାଳ ତୁମକୁ ମାନେ ନାହିଁ, ସେଥିଲାଗି ସେ ତୁମକୁ ଥରେ ସୁଦ୍ଧା ଦେଖିବାକୁ ଆସିଲା ନାହିଁ ।" ଠିକ୍ ଏହି ସମୟରେ କୋକଶିୟାଳ ଆସି ପହୁଞ୍ଚି ଗଧିଆର ଶେଷ କଥା ଶୁଣି ପାରିଲା । ସିଂହ ତାକୁ ଦେଖି ରାଗରେ ଗର୍ଜନ କରି ଉଠିବାରୁ ସେ ନିଜକୁ ରକ୍ଷା କରିବାଲାଗି କହିଲା, "ଯେଉଁମାନେ ତୁମକୁ ଦେଖିବାକୁ ଆସିଛନ୍ତି ସେମାନେ ତୁମର କି ଉପକାର କରିଅଛନ୍ତି ? କିନ୍ତୁ ମୁଁ ନାନା ସ୍ଥାନରେ ବୁଲି ବୈଦ୍ୟ ଲୋକ ତୁମକୁ ଭଲ କରିବାର ଉପାୟ ଜାଣି କରି ଆସିଅଛି ।" ସିଂହ ଏହା ଶୁଣି ଆରୋଗ୍ୟ ହେବାର ଉପାୟ ସାଙ୍ଗେ ସାଙ୍ଗେ କହିବାକୁ ହୁକୁମ ଦେବାରୁ କୋକଶିୟାଳ କହିଲା, 'ତୁମେ ଗୋଟିଏ ଜୀୟନ୍ତା ଗଧିଆର ଚମଡ଼ା ଛଡ଼ାଇ ସେହି ଚମଡ଼ାକୁ ସେହିକ୍ଷଣି ଦେହରେ ଘୋଡ଼ି ହେଲେ ତୁମର ରୋଗ ଭଲ ହୋଇଯିବ । ସାଙ୍ଗେ ସାଙ୍ଗେ ସିଂହ ଗଧିଆକୁ ଧରି ତାହାର ଚମଡ଼ା ଛଡ଼ାଇଲା । ଏହା ଦେଖି କୋକଶିୟାଳ ଟିକିଏ ହସି ଗଧିଆକୁ କହିଲା, "ତୁମେ ମୁନିବର ମନକୁ ରାଗାଇ ନ ଦେଇ ଭଲ ବାଟକୁ ନେଇଥିଲେ ଏପରି ହୋଇ ନ ଥାନ୍ତା ।"

—o—

( ୮୦ )

## ଭାଣ୍ଡ ଓ ଗାଉଁଲିଲୋକ ।



ଜଣେ ଧନୀଲୋକ ଥରେ ଥିଏଟର କରାଇ ବିନା ପଇସାରେ ଆସି ଦେଖିବାକୁ ଲୋକମାନଙ୍କୁ ଅନୁମତି ଦେଲେ ଓ ଗୋଟିଏ ବିଜ୍ଞାପନ ଦେଲେ ଯେ ଗୋଟିଏ କିଛି ନୂଆ କୌତୁକ ବାହାର କରି ଦେଖାଇ ପାରିବ ତାକୁ ଯଥେଷ୍ଟ ପୁରସ୍କାର ଦିଆଯିବ । ଏ ପୁରସ୍କାର ପାଇଁ ଅନେକ ଲୋକ ଅନେକ ଖେଳ ଦେଖାଇଲେ । ଶେଷରେ ଜଣେ ଭଣ୍ଡ ଆସି କହିଲା, "ମୁଁ ଏପରି ଗୋଟିଏ ଖେଳ ଦେଖାଇବି ଯାହା କେବେ କେହି ଦେଖାଇ ନାହିଁ । ତାର

ଅଙ୍କା ତାମସାଯୋଗୁଁ ଲୋକମାନେ ସେ ଭଣ୍ଡକୁ ଭଲକର ଜାଣିଥିଲେ । ଏ ଖବର ବ୍ୟାପ୍ତ ହେବାରୁ ସେ ସ୍ଥାନରେ ଗୋଟିଏ ଚହଳ ପଡ଼ିଗଲା ଓ ଥିଏଟରର ଘରଅଗଡ଼ ଲୋକରେ ପୂର୍ଣ୍ଣ ହୋଇଗଲା ।

ଭଣ୍ଡ କିଛି ଜିନିସପତ୍ର ବା ଅନ୍ୟ କେହି ସଙ୍ଗୀକୁ ନ ନେଇ ଯାଇ ମଞ୍ଚ ଉପରେ ଛିଡ଼ା ହେଲା ଏବଂ ଲୋକମାନେ ଅତି ଆଗ୍ରହରେ ଚୁପ୍‌ଚାପ୍ ହୋଇ ସେହି ଆଡ଼କୁ ଅନାଇ ରହିଲେ । ଭଣ୍ଡ ହଠାତ୍ ତାର ଶିର ଆଡ଼କୁ ମୁଣ୍ଡ ନୁଆଁଇ ଏପରି ସୁନ୍ଦର ଭାବରେ ଘୁଷୁରି ପରି ବୋବାଇଲା ଯେ ସମସ୍ତେ କହିଲେ ସେ ତାର ପୋଷାକ ତଳେ ଗୋଟିଏ ଘୁଷୁରିଛୁଆ ରଖିଛି । କିନ୍ତୁ ସେ ଯେତେବେଳେ ତାର ପୋଷାକ ଝାଡ଼ି ଦେଖାଇ ଦେଲା ଯେ କିଛି ନାହିଁ, ସମସ୍ତେ ତାକୁ ଭାରି ପ୍ରଶଂସା କରିବାକୁ ଲାଗିଲେ । ଜଣେ ଗାଉଁଲି ଲୋକ ଏହା ଦେଖି ଭାବିଲା ଏ ଖୁଷିରେ ଏ ମତେ ହଟାଇ ପାରିବ ନାହିଁ । ସେହିକ୍ଷଣି ସେ ସମସ୍ତଙ୍କୁ ଜଣାଇ ଦେଲା ଯେ ମେ କାଲି ସେହିପରି ଖେଳ ଏହା ଅପେକ୍ଷା ଅନେକ ଭଲରୂପେ କରି ଦେଖାଇଦେବ । ତହିଁ ଆରଦିନ ଅନେକ ବେଶୀଲୋକ ଜମା ହେଲେ । ପ୍ରାୟ ଅଧିକାଂଶ ଲୋକ ଭଣ୍ଡ ପକ୍ଷ ନେଇ ଗାଉଁଲିଲୋକକୁ ପରିହାସ କରିବେ ବୋଲି ଆସିଥିଲେ । ଦୁହେଁଯାକ ଯାଇ ମଞ୍ଚରେ ଛିଡ଼ା ହେଲା ପରେ ପ୍ରଥମେ ଭଣ୍ଡ ଘୁଷୁରିପରି ବୋବାଇବାରୁ ପୂର୍ବଦିନ ପରି ଲୋକମାନେ ତାକୁ ପ୍ରଶଂସା କରି ତାଳି ଦେଲେ । ତାହା ପରେ ଗାଉଁଲି ଲୋକଟି ଆରମ୍ଭ କଲା । ସେ ବାହାନା କରି ଲୋକମାନଙ୍କୁ ଦେଖାଇଲା ଯେପରି କି ତାର ଲୁଗାତଳେ ଗୋଟିଏ ଘୁଷୁରିଛୁଆ ଲୁଚାଇ ରଖିଛି, ମାତ୍ର ଲୋକମାନେ କେହି ସେ ସନ୍ଦେହ କଲେ ନାହିଁ । କିନ୍ତୁ ପ୍ରକୃତରେ ସେ ଗୋଟିଏ ଘୁଷୁରିଛୁଆ ଲୁଚାଇ କରି ଧରିଥିଲା । ଲୁଗା ଉପରେ ହାତ ପୂରାଇ ତାର କାନ ମୋଡ଼ି ଦେବାରୁ ସେ ଯନ୍ତ୍ରଣାରେ ଅବିକଳ ଘୁଷୁରି ପରି ଚିତ୍କାର କରି ଉଠିଲା; କିନ୍ତୁ ଲୋକମାନେ ଏକବାକ୍ୟରେ ପାଟି କରି କହିଲେ, "ଭଣ୍ଡ ଏହା ଅପେକ୍ଷା ଭଲଭାବରେ ଘୁଷୁରି ପରି ବୋବାଇଥିଲା । ଅତଏବ ଏହାକୁ ମଞ୍ଚରୁ ବାହାର କରି ଦିଅଯାଉ ।"

ଏହା ଶୁଣି ଗାଉଁଲୋକଟି ତାର ଲୁଗା ଭିତରୁ ଦୁଷ୍ଟ୍ରଗୁଡ଼ିକୁ ବାହାର କରି ଦେଇ ସଫା ଦେଖାଇ ଦେଲା ଯେ ସେମାନଙ୍କର ଭ୍ରମ କେତେଦୂର । ସେ କହିଲା "ଏଇ ଦେଖ, ଏଥିରୁ ଜଣାପଡ଼ୁଛି ତୁମମାନଙ୍କର ବିଚାର କପଟ ।" ଏହା ଶୁଣି ଲଜ୍ଜାରେ ସମସ୍ତଙ୍କର ମୁହଁ ପୋଡ଼ିଗଲା ।



( ୮୧ )

## ଈଗଲପକ୍ଷୀ ଓ କାଉ ।



ଗୋଟିଏ ଈଗଲପକ୍ଷୀ ଗୋଟିଏ ଉଚ୍ଚ ପାହାଡ଼ ଉପରୁ ଓହ୍ଲାଇ ଆସି ଗୋଟିଏ ମେଣ୍ଢାଛୁଆକୁ ନଖରେ ଧରି ଉପରକୁ ନେଇଗଲା । ଏହା ଦେଖି ଗୋଟିଏ କାଉ ମନରେ ବଡ଼ ଈର୍ଷା ହେଲା । ସେ ଈଗଲ ପରି ଉଡ଼ିବାକୁ ଓ ବଳ ଦେଖାଇବାକୁ ମନେ ମନେ ସଙ୍କଳ୍ପ କଲା । ଏହା ଭାବି ସେ ଡେଣାକୁ ଖୁବ୍ ଜୋରରେ ହଲାଇ ଉଡ଼ିଯାଇ ଗୋଟିଏ ବଡ଼ ମେଣ୍ଢା ଉପରେ ବସି ପଡ଼ିଲା । ଉଦ୍ଦେଶ୍ୟ ଯେ ତାକୁ ବୋହିକରି ନେଇଯିବ, କିନ୍ତୁ ତାର ନଖ ମେଣ୍ଢା ଲୋମରେ ଲାଗି ଯିବାରୁ ସେ ଯେତେ ବାଡ଼ େଇପିଟି ହେଲା ଆଉ ନଖ ଛଡ଼ାଇ ପାରିଲା ନାହିଁ । ମେଣ୍ଢାଜଗୁଆଳ ଏହା ଦେଖିପାରି ଦୌଡ଼ିଯାଇ କାଉକୁ ଧରି ପକାଇଲା । ସେ ତାର ଡେଣା ଦୁଇଟି କାଟି ଦେଇ ଘରକୁ ନେଇ ତାର ପିଲାମାନଙ୍କୁ ଦେଲା । ପି . ମାନେ ଯେତେବେଳେ ପଚାରିଲେ ଏଟି କି ପକ୍ଷୀ, ମେଣ୍ଢା ଜଗୁଆଳ କହିଲା, "ମୁଁ ନିଶ୍ଚୟ କରି ଜାଣେ ଯେ ଏ ଗୋଟିଏ କାଉ । କିନ୍ତୁ ସେ ନିଜେ ମନେ କରେ ଯେ ଗୋଟିଏ ଈଗଲପକ୍ଷୀ ।"



(୮୨)

## କୁକୁର ଓ ଚମଡ଼ା ।



କେତେଗୁଡ଼ାଏ କୁକୁର ଶୋଷରେ କାତର ହୋଇ ଦେଖିଲେ ଯେ ନଈ ଭିତରେ କେତେଗୁଡ଼ାଏ ଗୋରୁ ଚମଡ଼ା ବୁଡ଼ା ହୋଇ ରଖା ହୋଇଛି ।



ଚମଡ଼ା ପାଖକୁ ଯାଇ ନ ପାରି ସେମାନେ ନଈଠାରୁ ପିଇଦେବେ ବୋଲି ସ୍ଥିର କଲେ । କିନ୍ତୁ ଫଳରେ ହେଲା ଯେ ସେମାନେ ଚମଡ଼ା ପାଖରେ ପହଞ୍ଚିବା ପୂର୍ବରୁ ପାଣି ପିଇ ପିଇ ପେଟ ଫାଟି ମରିଗଲେ ।

ଅସମ୍ଭବ କାର୍ଯ୍ୟରେ ହାତ ଦେବା ଉଚିତ ନୁହେଁ ।



## ( ୮୩ )

## ଘୋଡ଼ା ଓ ସହିସ ।



ଗୋଟିଏ ସହିସ ଦିନକମାନ ଲଗିପଡ଼ି ଘୋଡ଼ାକୁ ଖରଡ଼ା କରେ ଓ ଘଷେ, କିନ୍ତୁ ତାର ଦାନାତକ ଚୋରାଇ ନେଇ ବିକି କରି ଖାଏ । ଦିନେ ଘୋଡ଼ା କହିଲା, "ତୁମେ ଯଦି ମତେ ଭଲ ଅବସ୍ଥାରେ ରଖିବାକୁ ଚାହଁ, ତେବେ ମତେ କମ୍ ଘଷାମଜା କରି ବେଶି ଖାଇବାକୁ ଦିଅ ।"

ପେଟରୁ ଖେଣ୍ଟି ଖାଇ ପିଠି ଅଉଁସିଲେ କିଛି ଫଳ ହୁଏ ନାହିଁ ।



## ( ୮୪ )

## ଚୋର ଓ ତାର ମା ।



ଗୋଟିଏ ପିଲା ତାର ଗୋଟିଏ ସଙ୍ଗୀ ଇସ୍କୁଲ ପିଲାର ଖଣ୍ଡିଏ ପଢ଼ାବହି ଚୋରି କରି ତାର ମା' ପାଖକୁ ନେଇଗଲା । ତାର ମା ତାକୁ ମାରିବା ଦୂରେ ଥାଉ ବରଂ ପୁଅକୁ ଏଥିରେ ଉତ୍ସାହ ଦେଲା । ଆଉ ଥରେ ସେ ପିଲାଟି ଗୋଟିଏ ପୋଷାକ ଚୋରି କରି ନେଇ ତା ମା'କୁ ଦେବାରୁ ସେ ତାକୁ ଅଧିକ ପ୍ରଶଂସା କଲା । ପିଲାଟି ଯେତେବେଳେ ବଡ଼ ହେଲା ସେ କ୍ରମେ ବେଶି ବେଶି ଦାମିକା ଜିନିଷ ଚୋରି କରିବାକୁ ଲାଗିଲା । ଶେଷରେ ଦିନେ ସେ ଧରା ପଡ଼ିବାରୁ ତାର ହାତ ପଛଆଡ଼େ ବାନ୍ଧି ତାକୁ ଫାଶି ଦେବାକୁ ନେଇଗଲେ । ତାର ମା ପଛେ ପଛେ ଗୋଡ଼ାଇ ଦୁଃଖରେ ଛାତି କୋଡ଼ି ହେବାକୁ ଲାଗିଲା । ଏହା ଦେଖି ତା' ପୁଅ କହିଲା, "ମୁଁ ମୋ ମା କାନରେ ଗୋଟିଏ କଥା କହିବାକୁ ଚାହେଁ ।" ତାର ମା' ଯେତେବେଳେ ପାଖକୁ ଆସିଲା ସେ ଦାନ୍ତରେ ମା'ର କାନକୁ ଧରି ଛିଣ୍ଡାଇ ନେଇଗଲା । ମା' ତାକୁ କୁଳାଙ୍ଗାର ପୁଅ ବୋଲି ଗାଳି ଦେବାରୁ

ସେ ଉତ୍ତର କଲା, "ଅହା ! ମୁଁ ଯେଉଁଦିନ ପ୍ରଥମେ ସେହି ପଢ଼ା ବହି ଚୋରିକରି ତୋ ପାଖକୁ ଆଣିଥିଲି, ସେହି ଦିନ ଯଦି ତୁ ମତେ ମାଡ଼ ଦେଇ ମନା କରି ଦେଇଥାନ୍ତୁ ତାହାହେଲେ ମୋର ଏ ଦଶା ହୋଇ ନ ଥାନ୍ତା !"

—ः०ः—

( ୮୫ )

## ଗୋରୁ ଓ କଂସେଇ ।



କଂସେଇମାନେ ଗୋରୁମାନଙ୍କୁ ମାରି ବ୍ୟବସାୟ କରୁଥିବାରୁ ଦିନେ ଗୋରୁମାନେ ସେମାନଙ୍କୁ ମାରିପକାଇବାକୁ ସ୍ଥିର କଲେ । ଏଥିଲାଗି ସେମାନେ ଏକାଠି ହୋଇ ସେମାନଙ୍କ ଶିଙ୍ଗ ଘଷି କଂସେଇମାନଙ୍କୁ ମାରିବାକୁ ବାହାରିଲେ । ସେଥି ମଧ୍ୟରୁ ଗୋଟିଏ ବୁଢ଼ାଗୋରୁ ବାହାରି କହିଲା, "କଂସେଇମାନେ ଆମ୍ଭମାନଙ୍କୁ ମାରନ୍ତି ସତ, କିନ୍ତୁ ସେମାନେ ଏପରି କୌଶଳରେ ମାରନ୍ତି ଯେ ସେଥିରେ ବେଶି କଷ୍ଟ ହୁଏ ନାହିଁ । ଆମ୍ଭେମାନେ ଯଦି ସେମାନଙ୍କୁ ମାରି ପକାଉଁ ତାହାହେଲେ ଅନାଡ଼ିଲୋକଙ୍କ ହାତରେ ପଡ଼ି ଆମ୍ଭମାନଙ୍କର ଦୋହରି ମରଣ ହେବ, କାରଣ ଏହା ନିଶ୍ଚୟ ଜାଣିଥାଅ ଯେ ସବୁ କଂସେଇଯାକ ମଲେ ସୁଦ୍ଧା ମନୁଷ୍ୟମାନେ ଗୋରୁମାଂସ ନ ଖାଇ ରହିବେ ନାହିଁ ।"

ଗୋଟିଏ ବିପଦରୁ ଉଦ୍ଧାର ପାଇବାକୁ ଯାଇ ସମସ୍ତ ସମୟରେ ଆମ୍ଭେମାନେ ଆହୁରି ବଡ଼ ବିପଦକୁ ଡାକି ଆଣୁ ।



## ( ୮୨ )

## ହରିଣ, ଗଧିଆ ଓ ମେଣ୍ଢା ।



ଗୋଟିଏ ହରିଣ ଗୋଟିଏ ମେଣ୍ଢାକୁ କିଛି ଗହମ ଧାର ମାଗିଲା ଓ କହିଲା ଗଧିଆ ମୋ ପାଇଁ ଜାମିନ୍ ହେବ । ମେଣ୍ଢା ମନରେ ସନ୍ଦେହ ହେବାରୁ ସେ ଧାର ନ ଦେଇ କହିଲା, "ଗଧିଆର ଅଭ୍ୟାସ ଯେ ସେ ଯାହା ଚାହିଁବ ଧରି ପଳାଇବ । ଆଉ ତୁମେ ଦୌଡ଼ିଲେ ମୁଁ ତୁମକୁ ଗୋଡ଼ାଇ ପାରିବି ନାହିଁ । ତେବେ ସୁଝିବା ଦିନ ମୁଁ ତୁମମାନଙ୍କୁ କିପରି ପାଇବି ।"

ଦୁଇଟା କଳା କମ୍ବଳ ମିଶି ଗୋଟାଏ ଧଳା କମ୍ବଳ ହୋଇ ନ ପାରେ କିମ୍ବା ଦୁଇଜଣ ଠକ ମିଳି ଜଣେ ସାଧୁଲୋକ ହୋଇ ନ ପାରେ ।



## ( ୮୩ )

## ସିଂହ, ବ୍ରହ୍ମା ଓ ହାତୀ ।



ସିଂହ ବ୍ରହ୍ମାଙ୍କ ପାଖକୁ ଯାଇ ଆପତ୍ତି କରି କହିଲା, "ମୁଁ ଆକାରରେ ବଡ଼, ମୋର ବଳ ଖୁବ୍ ବେଶୀ ଓ ମୁଁ ଦେଖିବାକୁ ସୁନ୍ଦର । ମୋର ଦାନ୍ତ ଓ ନଖ ଖୁବ୍ ମଜବୁତ୍ ଓ ମୁଁ ପଶୁମାନଙ୍କର ରଜା । କିନ୍ତୁ ବଡ଼ ଲଜ୍ଜାର କଥା ଯେ ମୁଁ କୁକୁଡ଼ା ଡାକ ଶୁଣିଲେ ବଡ଼ ଭୟ ପାଏଁ ।" ବ୍ରହ୍ମା କହିଲେ, "ତୁ କାହିଁକି ବୃଥା ଆପତ୍ତି କରୁଛୁ ? ମୋର ନଜର ଯାହା ଭଲ ଗୁଣ ମୁଁ ସେ ସବୁ ତତେ ଦେଇଛି ! ଆଉ କେବଳ ସେହି ଗୋଟାକ କଥା ଛଡ଼ା ତୋର ସାହସ କିଛି ଊଣା ନୁହେଁ ।" ସିଂହ ଏ କଥାରେ ବଡ଼ ଦୁଃଖିତ ହୋଇ କାନ୍ଦିବାକୁ ଲାଗିଲା ଓ ତାର ଡରୁଆପଣ ଲାଗି ନିଜକୁ ଅନେକ ଧିକ୍କାର କରି ମରିଯିବା ପାଇଁ ଇଚ୍ଛା କଲା ।

ଏହିପରି ଭାବୁଛି, ଏପରି ସମୟରେ ତାର ଗୋଟିଏ ହାତୀ ସଙ୍ଗେ ଦେଖା ହେବାରୁ ସେ ତାହା ସଙ୍ଗେ କଥାବାର୍ତ୍ତା କରିବାକୁ ଲାଗିଲା । କିନ୍ତୁ ସମୟ ପରେ ସିଂହ ଦେଖିଲା ଯେ ହାତୀ ଅନେକ ଥର ତାର କାନକୁ ହଲାଉଛି । ଏହା ଦେଖି ସେ ହାତୀକୁ ଏହାର କାରଣ ପଚାରିଲା । ଠିକ୍ ସେହି ସମୟରେ ହାତୀ ମୁଣ୍ଡ ଉପରେ ଗୋଟିଏ ମଶା ବସିବାରୁ ସେ ତାକୁ ଦେଖାଇ କହିଲା, "ଏହି ଯେଉଁ ମଶାଟିକୁ ଦେଖୁଛ, ସେ ଯଦି ମୋ କାନରେ ପଶିଯାଏ ତେବେ ମୁଁ ଯାଙ୍ଗେ ଯାଙ୍ଗେ ମରିଯିବି ।" ଏହା ଶୁଣି ସିଂହ ଭାବିଲା, "ଏତେ ବଡ଼ ଜନ୍ତୁ ହୋଇ ଏହାର ଯେତେବେଳେ ଗୋଟାଏ ସାମାନ୍ୟ ମଶାକୁ ଏତେ ଭୟ, ମୁଁ ତେବେ ଆଉ ଦୁଃଖ କରିବି ନାହିଁ କି ମରିବାକୁ ଚାହିଁବି ନାହିଁ । ମଶାଠାରୁ କୁକୁଡ଼ା ଯେତେ ଗୁଣ ବଡ଼, ମୋର ଅବସ୍ଥା ହାତୀଠାରୁ ସେତିକି ଗୁଣରେ ଭଲ ।"



( ୮୮ )

## ସ୍ତ୍ରୀଲୋକ ଓ ତାର କୁକୁଡ଼ା ।



ଜଣେ ସ୍ତ୍ରୀଲୋକର ଗୋଟିଏ କୁକୁଡ଼ା ଥିଲା ଯେ ସେ ପ୍ରତିଦିନ ଗୋଟିଏ ଲେଖାଏ ଡିମ୍ବ ପାରୁଥିଲା । ସ୍ତ୍ରୀଲୋକଟି ମନେ ମନେ ଭାବିଲା, କି ଉପାୟ କଲେ କୁକୁଡ଼ା ଦୁଇଟି କରି ଡିମ୍ବ ଦେବ । ଶେଷରେ ସେ ତାକୁ ଯାହା ଖାଇବାକୁ ଦେଉଥିଲା ତାର ଦୁଇଗୁଣ ଦେବାକୁ ସ୍ଥିର କଲା । ସେହିଦିନଠାରୁ କୁକୁଡ଼ାଟି ଖୁବ୍ ମୋଟା ଓ ଚିକଣିଆ ହୋଇ ଜମା ଡିମ୍ବ ଦେଇ ପାରିଲା ନାହିଁ ।

ଅତି ଲୋଭରୁ ମୂଳ ବୁଡ଼େ ।

—

( ୮୯ )

## ଭରତଆପକ୍ଷୀ ଓ ତାହାର ଛୁଆ ।



ଗୋଟିଏ ଭରତଆପକ୍ଷୀ ବସନ୍ତ ସମୟରେ ଆସି ଗହମ କ୍ଷେତରେ ବସା କରି ରହିଲା । ସେତେବେଳକୁ ଗହମଗଛ ସବୁ ଶ୍ରେଷ୍ଠ ଶ୍ରେଷ୍ଠ ହୋଇଥିଲା । ଗହମ ପାଚିବାର ଦେଖି ଦିନେ କ୍ଷେତର ମାଲିକ କହିଲା, "ଏଥର ତେବେ ପଡ଼ୋଶୀମାନଙ୍କୁ ଖବର ଦେବାକୁ ହେବ । ସେମାନେ ଆସି ମତେ ଗହମ କାଟିବାରେ ସାହାଯ୍ୟ କରିବେ ।" ସେତେବେଳକୁ ଭରତଆପକ୍ଷୀର ଛୁଆ-ଗୁଡ଼ିକଙ୍କର ପର ହୋଇସଲାଣି ଓ ସେମାନେ ଉଡ଼ି ଶିଖିଲେଣି । କ୍ଷେତର ମାଲିକର କଥା ଶୁଣି ଗୋଟିଏ ଛୁଆ ସେ କଥା ତା ମା' ଆଗରେ କହିଲା ଓ ପଚାରିଲା, "ଆମ୍ଭେମାନେ ତେବେ କେଉଁଆଡ଼େ ଯିବା ?" ତାର ମା କହିଲା, "ଏହିକ୍ଷଣି ଯିବାର ସମୟ ହୋଇ ନାହିଁ । ଯେଉଁ ଲୋକ ଫସଲ କାଟିବାକୁ ତାର ବନ୍ଧୁବାନ୍ଧବଙ୍କ ଉପରେ ନିର୍ଭର କରେ, ଜାଣିବ ତାର ସେଥିରେ ବେଶି ଗରଜ ନାହିଁ ।"

କିଛିଦିନ ପରେ କ୍ଷେତର ମାଲିକ ଆଉ ଥରେ କ୍ଷେତକୁ ଆସି ଯେତେବେଳେ ଦେଖିଲା ଯେ ଗହମ ସବୁ ବେଶି ପାଚି ତଳେ ଝଡ଼ି ପଡ଼ୁଛି, ସେ କହିଲା, "କାଲି ମୁଁ ମୋର ହଳିଆ ଓ ଆଉ କେତେଜଣ ଦାଣ୍ଡ ମୂଲିଆ ଆଣି ଗହମ କାଟି ପକାଇବି ।" ଭରତଆପକ୍ଷୀ ଏ କଥା ଶୁଣି ତାର ଛୁଆମାନଙ୍କୁ କହିଲା, "ଏଥର ଆସି ଆମର ଯିବାର ସମୟ ହେଲା । ଫସଲ କାଟିବାକୁ ଏଥର ଲୋକଟିର ପ୍ରକୃତ ମନ ହେଲାଣି, ସେ ଆଉ ବନ୍ଧୁବାନ୍ଧବଙ୍କ ଉପରେ ନିର୍ଭର ନ କରି ନିଜେ କାଟିବାକୁ ସ୍ଥିର କଲାଣି ।"

ନିଜେ ନ କରି ପର ଉପରେ ନିର୍ଭର କଲେ କୌଣସି କାର୍ଯ୍ୟ ଭଲ ହୁଏ ନାହିଁ ।

---

( ୯୦ )

## ଛେଳିଛୁଆ ଓ ଗଧିଆ ।



ଗୋଟିଏ ଛେଳିଛୁଆ ଗୋଟିଏ ଘରର ଛାତ ଉପରେ ଛିଡ଼ା ହୋଇ ଦେଖିଲା ଯେ ଗୋଟାଏ ଗଧିଆ ସେହି ବାଟ ଦେଇ ଯାଉଛି । ସେଠାରେ ଗଧିଆ ତାର କିଛି କରି ପାରିବ ନାହିଁ ଜାଣି ସାରି ସେ ତାକୁ ପରିହାସ କରିବାକୁ ଓ ଗାଳିଦେବାକୁ ଲାଗିଲା । ଗଧିଆ ଉପରକୁ ଅନାଇ କହିଲା, 'ମୁଁ ତୁମ କଥା ବେଶ ଶୁଣି ପାରୁଛି । ତୁମେ ମନେ ଥଟା କରୁ ନାହିଁ ଯେ, ଯେଉଁ ଛାତ ଉପରେ ତୁମେ ଛିଡ଼ା ହୋଇଛ ସେହି ମନେ ଥଟା କରୁଛି ।"

ସମୟ ଓ ସ୍ଥାନ ସମସ୍ତ ସମୟରେ ଦୁର୍ବଳକୁ ସବଳ ଉପରେ ସ୍ୱତ୍ୱ ଦିଏ ।

—ଃ—

( ୯୧ )

## ଶିକାରୀ ଓ ଅଶ୍ୱାରୋହୀ ।



ଜଣେ ଶିକାରୀ ଜାଲରେ ଗୋଟିଏ ଠେକୁଆ ଧରି ତାକୁ କାନ୍ଧରେ ଧରି ଘରକୁ ଫେରୁଥିଲା । ଜଣେ ଅଶ୍ୱାରୋହୀ ତାକୁ ବାଟରେ ଦେଖି କିଣିବି ବୋଲି ବାହାନା କରି ଶିକାରୀକୁ ଠେକୁଆଟି ମାଗିଲା । ଶିକାରୀ ଠେକୁଆଟି ତା' ହାତକୁ ବଢ଼ାଇ ଦେବାକୁ ସେ ତାକୁ ନେଇ ଯେତେ ଶୀଘ୍ର ପାରେ ଘୋଡ଼ା ଦୌଡ଼ାଇ ପଳାଇଗଲା । ଶିକାରୀ ତାକୁ ଧରିବି ବୋଲି ତା' ପଛେ ପଛେ ଗୋଡ଼ାଇଲା, କିନ୍ତୁ ଅଶ୍ୱାରୋହୀ କ୍ରମେ କ୍ରମେ ତାକୁ ଅନେକ ଦୂର ବଳିଗଲାରୁ ହତାଶ ହୋଇ ଶେଷରେ ସେ ତାକୁ ଡାକିକରି କହିଲା, "ଆଚ୍ଛା ଯା ଯା, ମୁଁ ବର୍ତ୍ତମାନ ତୁମକୁ ଏ ଠେକୁଆଟି ଉପହାର ଦେଲି ।"

( ୯୨ )

## ଘୋଡ଼ା ଓ ତାର ଆରୋହୀ ।



ଜଣେ ଅଶ୍ୱାରୋହୀ ସୈନ୍ୟ ତାର ଘୋଡ଼ାଟିର ଖୁବ୍ ଯତ୍ନ କରୁଥିଲା । ଯେପର୍ଯ୍ୟନ୍ତ ଯୁଦ୍ଧ ଚାଲିଥିଲା ସେ ଘୋଡ଼ାଟିକୁ ସବୁ ଆପଦରେ ତାର ସଙ୍ଗୀ ବୋଲି ମନେ କରୁଥିଲା ଏବଂ ଭଲ କରି ତାକୁ ଘାସ ଓ ଦାନା ଖାଇବାକୁ ଦେଉଥିଲା । କିନ୍ତୁ ଯୁଦ୍ଧ ଶେଷ ହୋଇଯିବାରୁ ସେ କେବଳ ତାକୁ ତଷୁ ଖାଇବାକୁ ଦେଇ ତା ଉପରେ ଭାରି କାଠର ବୋଝ ବୁହାଇଲା ଓ ତାକୁ ନାନା କଠିନ ପରିଶ୍ରମ କରାଇ ତା ପ୍ରତି ବଡ ନିଷ୍ଠୁର ବ୍ୟବହାର କଲା ।

ପୁଣି ଯେତେବେଳେ ଯୁଦ୍ଧ ଆରମ୍ଭ ହେଲା ଓ ତାକୁ ଯୁଦ୍ଧକୁ ଡକରା ପଡିଲା ସେ ତାର ଘୋଡ଼ା ଉପରେ ଯୁଦ୍ଧ ସାଜ ଦେଇ ଓ ନିଜେ ଭାରି ଯୁଦ୍ଧ ପୋଷାକ ପିନ୍ଧି ଚଢିଲା । ଘୋଡା ଏ ବୋଝ ସମ୍ଭାଳି ନ ପାରି ସାଙ୍ଗେ ସାଙ୍ଗେ ତଳେ ପଡିଗଲା ଓ ଆରୋହୀକୁ କହିଲା, "ତୁମକୁ ବର୍ତ୍ତମାନ ଚାଲିକରି ଯୁଦ୍ଧକୁ ଯିବାକୁ ହେବ, କାରଣ ତୁମେ ମୋତେ ଘୋଡାରୁ ଗଧ ପାଲଟାଇ ଦେଇଛ । ତୁମେ କପରି ଆଶା କରୁଛ ଯେ ଗଧଟାଏ ମୁହୂର୍ତ୍ତିକେ ଘୋଡ଼ା ପାଲଟି ଯିବ ?"

( ୯୩ )

## ଡାହାଳ କୁକୁର ଓ ଠେକୁଆ ।



ଗୋଟିଏ ଡାହାଳ କୁକୁର ଗୋଟିଏ ଠେକୁଆକୁ ତାର ବସାରୁ ଅନେକ ଦୂର ତଡି ନେଇ ଶେଷରେ ଆଉ ନ ପାରି ଶାନ୍ତ ହୋଇ ରହିଲା । ଗୋଟିଏ ଛେଳି ଜଗୁଆଳ ତାକୁ ବନ୍ଦ ହେବାର ଦେଖି ଥଟ୍ଟା କରି କହିଲା, "ତୁମ୍ଭଙ୍କ ମଧ୍ୟରୁ ଶ୍ରେଷ୍ଠଟି ଏକା ଭଲ ଦୌଡି ପାରେ ।" ଡାହାଳ ଉତ୍ତର କଲା, "ତା ମୋ ମଧ୍ୟରେ କି ତଫାତ୍ ତୁମେ ଦେଖି ପାରୁ ନାହିଁ । ମୁଁ ଦୌଡୁଥିଲି ଖାଲି ଖାଇବା ସକାଶେ । କିନ୍ତୁ ସେ ଦୌଡୁଥିଲା ତାର ଜୀବନ ପାଇଁ ।"

( ୯୪ )

## ବେଙ୍ଗ ଓ ବୈଦ୍ୟ ।



ଗୋଟିଏ ବେଙ୍ଗ ଦିନେ ପୋଖରୀ ଭିତରୁ ବାହାର ଆସି ସବୁ ଜନ୍ତୁ ମାନଙ୍କୁ କହିଲା ଯେ ସେ ଜଣେ ପ୍ରସିଦ୍ଧ ବୈଦ୍ୟ ଓ ଔଷଧ ଦେଇ ସବୁ ରୋଗ



ଭଲ କରି ଦେଇ ପାରେ । ଗୋଟିଏ କୋକିଶିଆଳି ତାକୁ ପଚାରିଲା, "ତୁମେ ତ ତୁମର ନିଜର ବଙ୍କା ଗୋଡ଼ ଓ କୋଞ୍ଚା ଚମକୁ ସୁଧାରି ପାରୁ ନାହିଁ, ଅନ୍ୟକୁ ଭଲ କରି ପାରିବ ବୋଲି କେଉଁ ମୁହଁରେ କହୁଛ ?"



( ୯୫ )

## ବିରାଡ଼ି ଓ ବ୍ରହ୍ମା ।



ଗୋଟିଏ ବିରାଡ଼ି ଜଣେ ଯୁବା ଲୋକକୁ ଦେଖି ତାକୁ ବିଭା ହେବା ଲାଗି ତାର ବଡ଼ ଇଚ୍ଛା ହେଲା । ତାର ରୂପ ବଦଳାଇ ଦେଇ ତାକୁ ଗୋଟିଏ ସ୍ତ୍ରୀଲୋକ କରିଦେବା ଲାଗି ସେ ଯାଇ ବ୍ରହ୍ମାଙ୍କୁ କହିବାରୁ ବ୍ରହ୍ମା ତାକୁ ଗୋଟିଏ ସୁନ୍ଦରୀ ବାଳିକା କରିଦେଲେ । ଯୁବାଲୋକ ଟି ତାର ରୂପ ଦେଖି ତାକୁ ବିଭା ହେବ ବୋଲି ଘରକୁ ନେଇଗଲା । ବ୍ରହ୍ମାଙ୍କର ଜାଣିବାକୁ ଇଚ୍ଛା ହେଲା ଯେ ବିରାଡ଼ିର ତ ଆକୃତିଟି ବଦଳି ଗଲା, ତେବେ ତାର ପ୍ରକୃତି ବଦଳିଛି କି ନାହିଁ । ଏହା ଭାବି ଯେଉଁ ଘରେ ସେ ଯୁବାଲୋକ ଓ ତାର ସ୍ତ୍ରୀ ବସିଛନ୍ତି ସେହି ଘରେ ସେ ନେଇ ଗୋଟିଏ ମୂଷା ଛାଡ଼ି ଦେଲେ । ବିରାଡ଼ି ତାର ଆକୃତି ବଦଳି ଯାଇଛି ଏ କଥା ଭୁଲି ଯାଇ ଖଟ ଉପରୁ ଡେଇଁ ପଡ଼ି ମୂଷାକୁ ଧରି ଖାଇବ ବୋଲି ତା' ପଛେ ପଛେ ଗୋଡ଼ାଇଲା । ଏହା ଦେଖି ବ୍ରହ୍ମା ହତାଶ ହୋଇ ପୁଣି ତାକୁ ବିରାଡ଼ି କରି ଦେଲେ ।

---

( ୯୬ )

## କଳିହୁଡ଼ି ସ୍ତ୍ରୀ ।



ଜଣେ ଲୋକର ଗୋଟିଏ ସ୍ତ୍ରୀ ଥିଲା । ଏହି ସ୍ତ୍ରୀଟିକୁ ପରିବାରର ସମସ୍ତେ ବଡ଼ ଘୃଣା ଚକ୍ଷୁରେ ଦେଖୁଥିଲେ । ଲୋକଟି ମନେ କଲା, ଏଠାରେ ତ ସ୍ତ୍ରୀକୁ କେହି ଭଲ ପାଉ ନାହାନ୍ତି, ଦେଖି ତାର ବାପଘରର ଲୋକମାନଙ୍କର ତାହା ପ୍ରତି ବ୍ୟବହାର କପରି । ଏହାପରି ଭାବି ସେ ଗୋଟିଏ ବାହାନା କରି ସ୍ତ୍ରୀକୁ ତାର ବାପ ଘରକୁ ପଠାଇଦେଲା । କିଛି ସମୟ ପରେ ସ୍ତ୍ରୀ ଫେରି ଆସିବାରୁ

ସ୍ୱାମୀ ପଚାରିଲା, "ତୁମେ ସେଠାରେ କିପରି ଥିଲ ? ସେଠାରେ ଗ୍ରାମବାସୀଙ୍କର ତୁମ ପ୍ରତି ବ୍ୟବହାର କିପରି ?" ସ୍ତ୍ରୀ ଉତ୍ତର ଦେଲା, "ଗଞ୍ଜୁଡ଼ି ଓ ମେଣ୍ଢା ଆଳସୁଭାବ ମତେ ଦୁଇ ଆଖିରେ ଦେଖି ପାରନ୍ତି ନାହିଁ ।" ସ୍ୱାମୀ କହିଲା, "ଯେଉଁମାନେ ବଡ଼ସକାଳୁ ଚରିବୁଲିକୁ ଯାଇ ସନ୍ଧ୍ୟାବେଳକୁ ଫେରନ୍ତି, ସେମାନେ ଯଦି ତୁମକୁ ଘୃଣା କଲେ, ତେବେ ଯେଉଁମାନଙ୍କ ସଙ୍ଗେ ତୁମେ ସମସ୍ତ ଦିନ କଟାଅ ସେମାନଙ୍କର ବ୍ୟବହାର ତୁମପ୍ରତି କଣ ହୋଇ ନ ଥିବ ?"

ଛୋଟ ଛୋଟ କଥାରୁ ଅନେକ ସମୟରେ ବଡ଼ ବଡ଼ ବିଷୟ ଜଣା ପଡ଼େ ।

---

( ୯୨ )

## ମହୁମାଛି ଓ ବ୍ରହ୍ମା ।

---

ମହୁମାଛି ଦିନେ କିଛି ମହୁ ଧରି ନେଇ ବ୍ରହ୍ମାଙ୍କୁ ଭେଟିଲା । ବ୍ରହ୍ମା ବଡ଼ ଖୁସି ହୋଇ ତାକୁ ଗୋଟିଏ ବର ଦେବେ ବୋଲି କହିବାରୁ ସେ କହିଲା, "ମତେ ତେବେ ଗୋଟିଏ ନାହୁଡ଼ ଦିଅ ଯେ କେହି ଲୋକ ମୋର ମହୁ ନେବାକୁ ଆସିବ ମୁଁ ତାକୁ ମାରି ପକାଇବି ।" ବ୍ରହ୍ମା ମନୁଷ୍ୟମାନଙ୍କୁ ବଡ଼ ଭଲ ପାନ୍ତି, ସେଥିଲାଗି ସେ ମହୁମାଛି ଉପରେ ବିରକ୍ତ ହେଲେ । କିନ୍ତୁ ପ୍ରତିଜ୍ଞା କରିଥିବାରୁ ତାର କଥା ଭାଙ୍ଗି ନ ପାରି କହିଲେ, "ତୁ ଯାହା ମାଗିଲୁ ତାହା ପାଇବୁ, କିନ୍ତୁ ଏଥିରେ ତୋର ନିଜର ଅନିଷ୍ଟ ହେବ । ତୁ ଯେଉଁଠି ତୋର ଏ ନାହୁଡ଼ ମାରିବୁ ସେହି କ୍ଷତସ୍ଥାନରେ ତୋ ନାହୁଡ଼ ରହିଯିବ ଓ ନାହୁଡ଼ଟି ଯିବାରୁ ତୁ ମରିଯିବୁ ।"

ଅନ୍ୟର ମନ୍ଦ ପାଞ୍ଚିଲେ ନିଜର ମନ୍ଦ ହୁଏ ।



( ୪୮ )

## ବିଧବା ଓ ତାର ଦୁଇ ବାଳିକା ଦାସୀ



ଗୋଟିଏ ବିଧବାର ଦୁଇଗୋଟି ବାଳିକା ଦାସୀ ଥିଲେ । ସେ ସକାଳୁ କୁକୁଡ଼ା ଡାକ ଶୁଣିଲାମାତ୍ରେ କାମଦାମ କରିବାକୁ ସେମାନଙ୍କୁ ଉଠାଇଦିଏ । ଏଥିରେ ବଡ଼ ବିରକ୍ତ ହୋଇ ସେମାନେ ମନେକଲେ କୁକୁଡ଼ାଟା ସିନା ମୁନିବକୁ ଏତେ ସକାଳୁ ଉଠାଇ ଦେଉଛି, ଯଦି ମାରି ଦେବୁ ଅଡୁଆ ଯିବ । ଏହା ଭାବି ସେମାନେ କୁକୁଡ଼ାକୁ ମାରି ପକାଇଲେ, ଦେଖିଲେ ଯେ ଏହାଦ୍ୱାରା ସେମାନଙ୍କ କଷ୍ଟ ଆହୁରି ବଢିଗଲା, ମୁନିବ କୁକୁଡ଼ାଠାରୁ ଆଉ ସମୟ ଜାଣି ନ ପାରି ସେମାନଙ୍କୁ ରାତିଅଧରୁ କରିବାକୁ ଉଠାଇଦେଲା ।

—ଏ—

( ୪୯ )

## ଠେକୁଆ ଓ ତାହାର ସଙ୍ଗୀମାନେ ।

ଗୋଟିଏ ଠେକୁଆ ଦୟାଳୁ ଓ ଅତି ଭଲ ଥିବାରୁ ଜାଣି ବଣର ସମସ୍ତ ଜୀବଜନ୍ତୁ ତାହାକୁ ଆପଣାର ବନ୍ଧୁ ବୋଲି ମନେ କରୁଥିଲେ । ଏ ଡ଼ାହାଳ କୁକୁରମାନେ ତାକୁ ଦେଖି ପାରି ଧରିବା ପାଇଁ ତା ପଛରେ ଏ ଜୋରରେ ଗୋଡ଼ାଇଲେ ଯେ ସେ ଦୌଡ଼ି ଦୌଡ଼ି ଶେଷରେ ରାସ୍ତାର ଗୋ ପାଖରେ ହାଲିଆ ହୋଇ ପଡ଼ିଗଲା । ନିକଟରେ ଗୋଟିଏ ଘୋଡ଼ା ଯାଉଥିବାର ଦେଖି ସେ ଅତ୍ୟନ୍ତ ଆନନ୍ଦିତ ହୋଇ ତାହାକୁ କହିଲା, ତୁମେ ଯଦି ଦୟା କରି ମତେ ତୁମର ପିଠି ଉପରକୁ ନେଇ ଯାଆନ୍ତ ଡ଼ାହାଳ କୁକୁରମାନେ ମତେ ଆଉ ଧରି ପାରନ୍ତେ ନାହିଁ ।" ଘୋଡ଼ା କ

ଏପରି ଅବସ୍ଥା ଦେଖି ମୁଁ ବଡ଼ ଦୁଃଖିତ ହେଲି, କିନ୍ତୁ ତୁମେ ଏ ଦୁଃଖିତ ହେଅ ନାହିଁ, ତୁମରି ବନ୍ଧୁ ବାନ୍ଧବମାନେ ତ ସମସ୍ତେ ପାଖରେ ଛଠି ଥିବେ ।"

ତା ପରେ ସେ ଗୋଟିଏ ଷଣ୍ଢକୁ ସାହାଯ୍ୟ ମାଗିବାରୁ ସେ କହିଲା, "ମୁଁ ଏଙ୍କୁ ଯେପରି ଭଲ ପାଏ ସେଥିକି ଅବଶ୍ୟ ତୁମକୁ ସାହାଯ୍ୟ କରନ୍ତି । ନ୍ତୁ ମୁଁ ଗୋଟିଏ ଗୋଠର ସର୍ଦ୍ଦାର । ମତେ ଅତି ଶୀଘ୍ର ସେଠାକୁ ଯିବାକୁ ବ ।" ତା ପରେ ଛେଳିକି ପଚାରିବାରୁ ସେ କହିଲା, "ମୋର ତୁମଗୁଡ଼ିକ ନେ ଠାଣ । ତୁମକୁ କାଟିବ । ତୁମେ ମେଣ୍ଢାକୁ କହୁ ନାହିଁ କାହିଁକି ? ତାର ଗୁଡ଼ିକ ବଡ଼ କୋମଳ ।" ତହୁଁ ମେଣ୍ଢାକୁ ପଚାରିବାରୁ ସେ କହିଲା, "ମୁଁ ଅନେକ ଦୁର୍ବଳ, ତହିଁରେ ତୁମର ଭାର ମୁଁ ସମ୍ଭାଳି ପାରିବି ନାହିଁ । ଅଭି ଶାଳ କୁକୁରମାନେ ମେଣ୍ଢାଙ୍କୁ ମଧ୍ୟ ଛାଡ଼ିବେ ନାହିଁ ।" ତା ପରେ ଗୋଟିଏ ବାଛୁରି ପାଳି ପଡ଼ିଲା । ସେ କହିଲା, "ବଡ଼ବଡ଼ମାନେ ତ ଚାଲିଗଲେ ଯେ ମାନେ ତୁମକୁ କିଛି ସାହାଯ୍ୟ ଦେଇ ପାରିଲେ ନାହିଁ । ମୁଁ ତ କହାଁଛି ପିଲା ବାଲ, ମୁଁ ଅବା ତୁମର କି ଉପକାର କରି ପାରେ ।" ଠିକ ଏହି ସମୟରେ ଶାଳ କୁକୁରମାନେ ଆସି ପହଞ୍ଚିଲେ । ବାଛୁରିଟି ପଳାଇଗଲା । ଠେକୁଆଟି ତା କପାଳକୁ ଆଦର ପଡ଼ିରହି କହିବାକୁ ଲାଗିଲା, "ସମ୍ପଦର ସାଥି ବିପଦର ସାଥି କେହି ନୁହେଁ ।"



(୧୦୦)

## ମୋଟ ଡାକ୍ତର ।

ଜଣେ ମୋଟ ନିଜ ବ୍ୟବସାୟଦ୍ୱାରା ପେଟ ପୋଷି ନ ପାରିବା ଶେଷରେ ନିଜର ଗ୍ରାମ ଛାଡ଼ି ଗୋଟିଏ ସହରକୁ ଯାଇ ସେଠାରେ ବୈଦ୍ୟବୃ ଆରମ୍ଭ କଲା । ସହରରେ ତାକୁ କେହି ଚିହ୍ନନ୍ତି ନାହିଁ । ସବୁପ୍ରକାର ରୋ ଔଷଧ ଜାଣେ ବୋଲି କହି ସେଠାରେ ସେ ଗୋଟିଏ ଔଷଧ ବିକ୍ରୟ କରିବା ଲାଗିଲା । ଖୁବ୍ ଲମ୍ବା ଚୌଡ଼ା ବିଜ୍ଞାପନ ଦେଇ ଓ ନାନା କୌଶଳ ସମସ୍ତଙ୍କଠାରେ ନିଜ ଔଷଧର ସୁଖ୍ୟାତି ପ୍ରଚାର କରି ଅଳ୍ପଦିନ ମଧ୍ୟ ସହରରେ ତାର ଖୁବ୍ ନାମ ଡାକ ହୋଇଗଲା । ଥରେ ସେ ନିଜେ ଅ ପୀଡ଼ିତ ହେବାରୁ ତାକୁ ସନ୍ଦେହ କରି ସେ ସ୍ଥାନର ଶାସନକର୍ତ୍ତା ତାର ବିଦ୍ୟା ପରୀକ୍ଷା କରିବାକୁ ବସିଲେ । ସେ ଗୋଟିଏ ପାତ୍ରରେ ଟିକିଏ ପାଣି ମିଛରେ ମୋଟକୁ କହିଲେ, ଦେଖ ଏ ପାତ୍ରରେ ବିଷ ଅଛି, ତୁମ୍ଭ ଏଥିରେ ମିଶାଇ ପିଇଦେଲେ ତୁମ୍ଭଙ୍କୁ ଗୋଟିଏ ପୁରସ୍କାର ଦିଆଯିବ । ଭୟରେ ମୋଟ ଶେଷରେ ସ୍ୱୀକାର କଲା ଯେ ସେ କିଛି ଔଷଧ ଜାଣେ ନ କେବଳ ଲୋକମାନେ ବୃଥାରେ ପ୍ରଶଂସା କରି କରି ତାର ଏପରି ହୋଇ ଯାଇଅଛି ।

ଏହା ପରେ ସେଠାର ଶାସନକର୍ତ୍ତା ଗୋଟିଏ ବଡ଼ ସଭା କରି ଲୋ ମାନଙ୍କୁ କହିଲେ, "ତୁମ୍ଭମାନଙ୍କଠାରୁ ବଳି ନିର୍ବୋଧ ଆଉ କିଏ ଅଛି ? ଦ୍ୱାରା ଗୋଡ଼ର ଜୋତା ସୁଦ୍ଧା କେହି ତିଆର କରାଇଲେ ନାହିଁ, ତାହା ହା ନିଜର ଜୀବନର ଭାର ଦେଇ ତୁମ୍ଭେମାନେ କିପରି ନିଶ୍ଚିନ୍ତ ଥିଲ !"

ସମାପ୍ତ ।

Printed by V. Kar, The Utkal Sahitya Press, Cutt